ପ୍ରକାଶକ :

ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୨

ମୁଦ୍ରାକର :
ପରମହଂସ ପ୍ରେସ୍
କଟକ-୨

ପ୍ରଥମ ସଂସ୍କରଣ
କାର୍ତ୍ତିକ ପୂର୍ଣ୍ଣିମା—୧୯୮୦

ମୂଲ୍ୟ—ତିନିଟଙ୍କା ମାତ୍ର

# THE ILLAD

Sri Jogindra Pattanaik

Publisher
Sri Anant Misra
Cuttack Students' Store
Cuttack-2

Printer
Paramahansa Press
Cuttack-2

1st Edition—1980

Price : Rs.3-00 Only

# ପଦେକଥା

ପ୍ରାଚୀନ ଗ୍ରୀସର ଦି ଇଲିୟାଡ୍ ଏବଂ ଅଡ଼ିସି ପ୍ରାଚୀନ ମହାକାବ୍ୟ । ଏହାର ରଚୟିତା ହୋମର ଅନ୍ଧଥିଲେ । ସେ ବୀଣା ବଜାଇ ଏହି ଅପୂର୍ବ କାହାଣୀ ଗାଇ ଗାଇ ଦେଶ ଦେଶ ବୁଲୁଥିଲେ । ଆମର ରାମାୟଣ ଓ ମହାଭାରତ ପରି ଏହି ଦୁଇଟି ମହାକାବ୍ୟ ପୃଥିବୀ ବିଖ୍ୟାତ ।

ଏ ଭିତରେ ହଜାର ହଜାର ବର୍ଷ ବିତି ଯାଇଛି; କିନ୍ତୁ ହୋମରଙ୍କର ଖ୍ୟାତି ସେହିପରି ରହିଛି ।

ଏହି ଗ୍ରନ୍ଥ ଗୁଡ଼ିକ ଖୁବ୍ ବଡ଼ । କିନ୍ତୁ; କିଶୋର କିଶୋରୀଙ୍କ ପଠନ ଉପଯୋଗୀ ହେବାଭଳି ସଂକ୍ଷିପ୍ତ କରା ହୋଇଅଛି ।

ମୋର ବିଶ୍ୱାସ ଏ ପୁସ୍ତକଟି ପିଲାମାନଙ୍କୁ ଖୁବ୍ ଭଲ ଲାଗିବ ଏବଂ ଏହାଦ୍ୱାରା ପ୍ରକାଶକ ଓ ଲେଖକଙ୍କର ଶ୍ରମସାର୍ଥକ ହେବ ।

**ଲେଖକ**

## —ଏକ—

ଟ୍ରଏ ସହରର ନିକଟରେ ଘନ ଅରଣ୍ୟ ବେଷ୍ଟିତ ଆଇଡ଼ା ପର୍ବତ । ତାହା ଏତେ ଘନଯେ ସୂର୍ଯ୍ୟ କିରଣ ତା ଭିତରେ ପ୍ରବେଶ କରିପାରେ ନାହିଁ । ଦିବାଲୋକରେ ମଧ୍ୟ ଅରଣ୍ୟ ଅଞ୍ଚଳ ଅନ୍ଧକାର ହୋଇଥାଏ ।

ଏହି ପର୍ବତର ଗୋଟିଏ କୋଣରେ ବସି ସେ'ଦିନ ରାଜକୁମାର ପେରିସ୍ ତାଙ୍କ ପିତା ଟ୍ରଏରାଜା ପ୍ରାୟାମେର ମେଷଗୁଡ଼ିକୁ ଜଗାରଖା କରୁଥିଲେ ।

ଏଣେ ଯେ ଅନ୍ଧକାର ଘନେଇ ଆସୁଛି ସେଥିପ୍ରତି ପେରିସ୍‌ଙ୍କର ନଜର ନଥିଲା । ସନ୍ଧ୍ୟା ଆଗତ ପ୍ରାୟ । ମେଷଗୁଡ଼ିକୁ ଘରକୁ ଫେରାଇନେବାକୁ ପେରିସ୍ ଯେପରି ଭୁଲିଯାଇଛନ୍ତି । ଏତିକବେଳେ ସମସ୍ତ ବନଭୂମି ହଠାତ୍ ଆଲୋକିତ ହୋଇଉଠିଲା । ଏପରି ଉଜ୍ଜ୍ୱଳ ଆଲୋକ ଦେଖି ପେରିସ୍ ଚମକି ପଡ଼ିଲେ ।

ସେ ଆଖି ରଗଡ଼ି ଦେଖିଲେ ଯେ ତାଙ୍କଠାରୁ କେତେହାତ ମାତ୍ର ଦୂରରେ ତିନୋଟି ଦେବୀମୂର୍ତ୍ତି ବିରାଜିଛନ୍ତି । ଗ୍ରୀକ୍ ଦେବୀମାନଙ୍କ ମଧ୍ୟରେ ହୀରା, ଏଥିନା ଏବଂ ଏଫ୍ରୋଡାଇଟୀ ସବୁଠାରୁ ସୁନ୍ଦରୀ ।

ଦେବୀ ହୀରା ହସ ହସ ମୁହଁରେ ଆଗେଇଆସି କହିଲେ—"ପେରିସ୍, ତମେ ପୃଥିବୀର ସବୁଠାରୁ ସୁନ୍ଦର ପୁରୁଷ । ତେଣୁ ତମ ପାଖକୁ ଗୋଟିଏ ବିଷୟର ସମାଧାନ ପାଇଁ ଆମେ ଆସିଛୁ । ଆମ ତିନିଜଣଙ୍କ ଭିତରୁ ଯେ ସବୁଠାରୁ ସୁନ୍ଦରୀ ତାଙ୍କୁ ଏହି ଆପେଲ୍‌ଟି ଦିଅ ।" ଏହା କହି ଗୋଟିଏ ସୁନାର ଆପେଲ ସେ ପେରିସ୍‌ଙ୍କ ହାତରେ ଦେଲେ । ହୀରା କହିଲେ—"ମୁଁ ହୀରା ଦେବରାଜ ଜିଉସ୍‌ଙ୍କର ପତ୍ନୀ । ମୁଁ ରାଣୀ । ମୋତେ ଦେଲେ ତମେ ଅସୀମ କ୍ଷମତା, ବିରାଟ ରାଜ୍ୟର ରାଜାହୋଇ ଯଶ ଧନ ସମ୍ପଦ ପାଇବ ।"

ଏହାପରେ ଦେବୀ ଏଥିନୀ କହିଲେ, "ଆପେଲଟି ମୋତେ ଦେଲେ ତୁମେ ପାଇବ ଜ୍ଞାନ । ମୋତେ ଦେବାରେ ତୁମେ ହେବ ଜ୍ଞାନୀ, ମୁଁ ହେବି ସମ୍ପଦ ବିପଦରେ ବନ୍ଧୁ; ଏବଂ ମୋ ପ୍ରସାଦରେ ତୁମର ଅସାଧ୍ୟ ବୋଲି କିଛି ରହିବ ନାହିଁ" ।

ସର୍ବଶେଷରେ ଦେବୀ ଏଫ୍ରୋଡାଇଟୀ କହିଲେ—"କେବଳ କ୍ଷମତା ଓ ଜ୍ଞାନପାଇଲେ ତୁମର ଲାଭ କଣ ହେବ ? ମୁଁ ଦେବି ତୁମକୁ ଆନନ୍ଦ । ମୁଁ ହେବି ତୁମ ପ୍ରେମର ଦେବୀ । ପୃଥିବୀର ସବୁଠାରୁ ସୁନ୍ଦରୀ ଝିଅସାଙ୍ଗରେ ତୁମକୁ ବିବାହ କରାଇ ଦେଇ ପାରିବି ।"

ଏଫ୍ରୋଡ଼ାଇଟୀଙ୍କ କଥା ଶୁଣି ପେରିସ୍ ଉତ୍ପୁଲ୍ଲିତ ହେଲେ । ପେରିସ୍ ଧୀରେ ଧୀରେ ଆପେଲଟିକୁ ଏଫ୍ରୋଡାଇଟୀଙ୍କ ହାତରେ ଦେଲେ । ହୀରା ଏବଂ ଏଥିନୀ ପେରିସ୍ ଉପରେ ଭୀଷଣ ରାଗିଗଲେ ଏବଂ ପ୍ରତିଜ୍ଞା କଲେ ଯେ ଯେଉଁ ଭାବରେ ହେଉ ଏ ଅପମାନର ପ୍ରତିଶୋଧ ସେ ନେବେ । ସମସ୍ତ ଟ୍ରୟନଗରବାସୀଙ୍କୁ ଏହାର କୁପରିଣାମର ଫଳ ଭୋଗ କରିବାକୁ ପଡ଼ିବ । ସେମାନେ ଏକଥା ଅନ୍ୟ ଦେବତାମାନଙ୍କୁ ମଧ୍ୟ ଜଣାଇଦେଲେ ।

ଏଫ୍ରୋଡାଇଟୀ ଦିନେ ପେରିସ୍‌କୁ ସମୁଦ୍ରରେ ଗ୍ରୀସ୍ ସହରକୁ ନେଇ ଆସିଲେ । ସେତେବେଳେ ସ୍ପାର୍ଟାର ରାଜା ଥିଲେ ମେନେଲାସ । ପେରିସ୍ ଏହି ରାଜାଙ୍କର ଅତିଥି ହୋଇ ରହିଲେ । ମେନେଲାସ ମଧ୍ୟ ଯତ୍ନସହକାରେ ତାଙ୍କୁ ରଖିଲେ । ସୁଖରେ ମେନେଲାସଙ୍କର ଦିନ କଟିଯାଉଥିଲା । ତାଙ୍କ ସ୍ତ୍ରୀ ହେଲେନ ଥିଲେ ପୃଥିବୀର ଶ୍ରେଷ୍ଠ ସୁନ୍ଦରୀ । ତାଙ୍କର ଗୋଟେ ଝିଅଟିଏ ଥିଲା । ତା ନାଁ ହାରମି ଓ ।

ହେଲେନ ଯେପରି ସୁନ୍ଦରୀ ପେରିସ୍ ସେହିପରି ସୁନ୍ଦର । ଦୁହେଁ କ୍ରମେ ପରସ୍ପରଙ୍କ ପ୍ରତି ଆକୃଷ୍ଟ ହେଲେ ଏବଂ ଏଫ୍ରୋଡାଇଟୀ ଆସି ତାଙ୍କ ଉପରେ ପ୍ରଭାବ ପକାଇଲେ ।

ଏହାଫଳରେ ହେଲେନ ତାଙ୍କର ସ୍ୱାମୀ, କନ୍ୟା ମାନ-ସମ୍ମାନ ଭୁଲିଯାଇ ପେରିସ୍‌ଙ୍କୁ ବିବାହ କରିବାକୁ ବ୍ୟାକୁଳ ହୋଇ ଉଠିଲେ । ଦିନେ ସମସ୍ତଙ୍କ ଅଗୋଚରରେ ହେଲେନ୍‌ ପେରିସ୍‌ଙ୍କ ସାଙ୍ଗରେ ଜାହାଜରେ ଟ୍ରୟକୁ ପଳାଇଗଲେ ।

ମେନେଲାସ ଏକଥା ଜାଣି ପେରିସ୍‌ଙ୍କର ଏ ବିଶ୍ୱାସ ଘାତକତାର ପ୍ରତିଶୋଧ ନେବାକୁ ଠିକ୍‌ କଲେ । ସେତେବେଳେ ଗ୍ରୀକ୍‌ର ସମ୍ରାଟ ମେନେଲାସଙ୍କ ଭାଇ ଏଗାମେମନନ ଥାନ୍ତି । ମେନେଲାସ ଭାଇଙ୍କୁ ସବୁକଥା କହିଲେ । ଏ ଯେ ଗ୍ରୀକ୍‌ ଜାତିର ଘୋର ଅପମାନର କଥା । ଏହାର ପ୍ରତିଶୋଧ ନେବାକୁ ପଡ଼ିବ । ଏପରି ଠିକ୍‌ କରି ଏଗାମେମନନ୍‌ ଗ୍ରୀକ୍‌ ଜାତିକୁ ଆହ୍ୱାନ କଲେ ।

ଦେଖୁ ଦେଖୁ ଗ୍ରୀସ୍‌ର ସମସ୍ତ ଅଞ୍ଚଳରେ ଯୁଦ୍ଧର ଧ୍ୱନି ଉଠିଲା । ସହସ୍ରାଧିକ ରଣତରୀ ପ୍ରସ୍ତୁତ ହେଲା । ଏକ ଲକ୍ଷ ଗ୍ରୀକ୍‌ ସୈନ୍ୟ ଜାହାଜରେ ଚଢ଼ି ଟ୍ରୟ ରାଜ୍ୟ ଆକ୍ରମଣ କରିବାକୁ ବାହାରି ପଡ଼ିଲେ ।



## —ଦୁଇ—

ଟ୍ରୟ ନଗରୀର ଚାରିପଟେ ଉଚ୍ଚ ପ୍ରାଚୀର । ପ୍ରାଚୀର ବାହାରେ ଗ୍ରୀକ୍‌ ସୈନ୍ୟ ଶିବିର ପକାଇ ଅପେକ୍ଷା କଲେ । ସେମାନେ ନଗର ଅବରୋଧ କରିବାରେ ଟ୍ରୟ ନଗରର ଚତୁର୍ଦ୍ଦିଗ ବନ୍ଦ ହୋଇଗଲା ।

ଟ୍ରୟ ଅଧିବାସୀଙ୍କୁ ଟ୍ରୋଜାନ କୁହାଯାଏ । ସେମାନେ ଗ୍ରୀକ୍‌ମାନଙ୍କଠାରୁ କୌଣସି ଗୁଣରେ କମ ନ ଥିଲେ । ସେମାନେ ଯୁଦ୍ଧ କରି ଚାଲିଲେ । କେତେବେଳେ ଗ୍ରୀକ୍‌ ଜିତୁଛି ଆଉ କେତେବେଳେ ଟ୍ରୋଜାନ

ଜିତୁଛୁ ଏହିପରି ଚାଲିଲା । ଦେଖୁ ଦେଖୁ ନଅବର୍ଷ ବିତିଗଲା କିନ୍ତୁ, ହାର ଜିତ୍ କାହାରି ହେଲାନାହିଁ ।

ଥରେ ଗ୍ରୀକ୍ ସୈନ୍ୟ ଟ୍ରୟର ଅନତିଦୂର ଙ୍କାଇସି ସହର ଆକ୍ରମଣ କରି ପ୍ରଚୁର ଧନରତ୍ନ ଲୁଟକରି ଦଳେ ଲୋକଙ୍କୁ ବନ୍ଦୀକରି ଆଣିଲେ । ଏହି ବନ୍ଦୀ ଭିତରେ ଙ୍କାଇସିର ପୁରୋହିତଙ୍କ ଝିଅ ପରମାସୁନ୍ଦରୀ ଙ୍କାଇସାଇସ୍ ଥିଲେ ।

ଲୁଣ୍ଠିତ ଦ୍ରବ୍ୟ ଭିତରୁ ଗ୍ରୀକ୍ ସମ୍ରାଟ କ୍ରୀତଦାସୀ ରୂପରେ ପରମା ସୁନ୍ଦରୀ ଙ୍କାଇସାଇସ୍‌କୁ ଗ୍ରହଣ କଲେ ।

ଙ୍କାଇସାଇସ୍‌ର ପିତା ବୃଦ୍ଧ ପୁରୋହିତ ଏପଲୋ ଦେବତାଙ୍କ ପୂଜାରୀଥିଲେ । ସେ ଦେବତାର ସୁନାଦଣ୍ଡ ଏବଂ ମାଳା ନେଇ ଗ୍ରୀକ୍ ଶିବିରକୁ ଗଲେ । ସଙ୍ଗରେ ମଣିମାଣିକ୍ୟ ଉପହାର ମଧ୍ୟ ନେଲେ ।

ବୃଦ୍ଧ ଅନୁନୟ ସହିତ ଏହି ଉପହାରଗୁଡ଼ିକ ନେଇ ଝିଅକୁ ଛାଡ଼ିଦେବାକୁ ପ୍ରାର୍ଥନା କଲେ । ଗ୍ରୀକ୍‌ମାନେ ଧନରତ୍ନ ପାଇ ଙ୍କାଇସାଇସ୍‌କୁ ଛାଡ଼ିଦେବାକୁ ରାଜିହୋଇଗଲେ ମଧ୍ୟ ଏଗାମେମନନ୍ ଏହାର ବିରୋଧ କଲେ । ସେ କହିଲେ, "ଏହା ଅସମ୍ଭବ । ଲୁଣ୍ଠିତ ସାମଗ୍ରୀ ଯେତେବେଳେ ଭାଗ ଭାଗ ହୋଇଯାଇଛି ମୁଁ ମୋ ଭାଗ ପାଇସାରିଛି । ଏହା ଉପରେ କାହାରି କିଛି କହିବାର କିମ୍ବା କରିବାର ଅଧିକାର ନାହିଁ । ମୁଁ ଙ୍କାଇସାଇସ୍‌କୁ ଛାଡ଼ିବି ନାହିଁ ।"

ବୃଦ୍ଧ ପିତା ଗ୍ରୀକ୍ ସମ୍ରାଟଙ୍କୁ ବହୁ କାକୁତିମିନତି କରିବାରେ ଏଗାମେମନନ୍ ରାଗି ଯାଇ କହିଲେ—"ଯାଅ, ବାହାରିଯାଅ, ଗ୍ରୀକ୍ ଶିବିରର ସୀମା ଭିତରକୁ ଆସିଲେ ଉଚିତ ଶିକ୍ଷା ପାଇବୁ !" ଲୁହଭରା ଆଖିରେ ବୃଦ୍ଧ ପୁରୋହିତ ଗ୍ରୀକ୍ ଶିବିରରୁ ବିଦାୟ ନେଲେ ।

ବୃଦ୍ଧ ପୁରୋହିତ ଧୀରେ ଧୀରେ ସମୁଦ୍ର ପାଖକୁ ଆସି ଆଣ୍ଠୁମାଡ଼ି ଏପଲୋ ଦେବତାଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ "ହେ ଦେବତା । ଯଦି

ମୁଁ କେବେ କାୟମନୋବାକ୍ୟରେ ତମର ସେବା କରିଥାଏ, ମନ୍ଦିରକରି ତମର ପ୍ରିୟ ସାମଗ୍ରୀ ଦେଇ ତମର ପୂଜା କରିଥାଏ ତେବେ ହେ ଦେବ ! ମୋ ପ୍ରତି ସଦୟ ହୁଅ । ଏ ଅପମାନ ଅସହ୍ୟ । ତମେ ମୋର ହୋଇ ଏହାର ପ୍ରତିଶୋଧ ନିଅ ।"

ଏହି କାତର ପ୍ରାର୍ଥନା ପହଞ୍ଚିଲା ସୁଦୂର ଅଲିମ୍ପାସ୍ ପର୍ବତରେ, ଯେଉଁଠି ଦେବତାମାନେ ବାସକରୁଥିଲେ । ଭକ୍ତର ଡାକରେ ଏପଲୋ ବିଚଳିତ ହୋଇ ପଡ଼ିଲେ । ସର୍ବାଙ୍ଗକମ୍ପି ଗଲା ରାଗରେ । ସେ ତୀବ୍ର ବେଗରେ ଆସି ଗ୍ରୀକ୍ ଶିବିର ପାଖରେ ତାଙ୍କର ରୂପେଲି ଧନୁରେ ଟଙ୍କାର ଦେଲେ ।

ଆରମ୍ଭ ହେଲା ଶର ବୃଷ୍ଟି । ଅସଂଖ୍ୟ ଶର ଆସି ଗ୍ରୀକ୍ ସୈନ୍ୟ ଉପରେ ପଡ଼ିବାକୁ ଲଗିଲା । ଗୃହୁଁ ଗୃହୁଁ ଏ ଅତର୍କିତ ଆକ୍ରମଣରେ ଗ୍ରୀକ୍ ଶିବିର କଂପି ଉଠିଲା ! ଅନେକ ମରିଶୋଇଲେ । ନଅଦିନ ଧରି ଏହିଭଳି ଶରବୃଷ୍ଟି ଚାଲିଲା । ଗ୍ରୀକ୍ ସୈନ୍ୟମାନଙ୍କର ମୃତଦେହରେ ସମୁଦ୍ର ଶର ପୂରିଗଲା ।

ଦଶମ ଦିବସରେ ଆକିଲସ୍ ନାମକ ଜଣେ ଗ୍ରୀକ୍ ବୀର ଏକ ମନ୍ତ୍ରଣା ସଭା ଡାକିଲେ । ଆକିଲସ୍ ଥିଲେ ସବୁଠାରୁ ବଡ଼ ବୀର ଓ ଯୋଦ୍ଧା । ପିତା ମଣିଷ କିନ୍ତୁ ତାଙ୍କର ମାତା ଥିଲେ ଜଣେ ଦେବୀ ।

ଆକିଲସ୍ କହିଲେ—"ଏପୋଲ ଦେବ ଆମ ଉପରେ ବିରକ୍ତ କାହିଁକି ? ଏପରି ହେଲେ ଗ୍ରୀକ୍ ସୈନ୍ୟ ନାଶ ହୋଇଯିବେ । ଭବିଷ୍ୟତ ଦ୍ରଷ୍ଟାମାନେ ଏହାର କାରଣ କହନ୍ତୁ ?"

ସମସ୍ତେ ଏ ପ୍ରସ୍ତାବରେ ଏକମତ ହେଲେ । ଚାଲକାସ୍ ନାମକ ଜଣେ ଭାଗ୍ୟ ଗଣନାକାରୀ କହିଲେ—"ଏପୋଲ ଦେବ କ୍ରୁଦ୍ଧ ହେବା କାରଣ ମୁଁ ଜାଣେ । ଏହି ଗ୍ରୀକ୍ ସମ୍ରାଟ ଏଗାମେମ୍ନନ୍ ଏଥିପାଇଁ ଦାୟୀ । ଟ୍ରାଇସିନଗରେ ଲୁଣ୍ଠନକରି କ୍ରାଇସାଇସ୍ ନାମକ ଯେଉଁ ସୁନ୍ଦରୀ ଆଣିଛନ୍ତି

ତାର ବାପା ଏହି ଏପୋଲ ଦେବ ମନ୍ଦିରର ପୁରୋହିତ । ଗ୍ରୀକ୍ ସମ୍ରାଟ ତାଙ୍କୁ ଅପମାନ କରିଥିବା ହେତୁ ଏପୋଲ ଦେବ ଆମ ଉପରେ ରାଗିଛନ୍ତି ।"

ସମସ୍ତେ ଏକ ସ୍ୱରରେ କହିଲେ-"ତେବେ ରକ୍ଷା ପାଇବାର ଉପାୟ କଣ ?"

—"ବ୍ରାଇସାଇସ୍‌କୁ ତା ବାପ ପାଖରେ ଫେରାଇ ଦେବାକୁ ହେବ । ଆଉ ଶହେ ପଶୁ ବଳୀ ଦେବାକୁ ହେବ ।"

ରାଗରେ ମୁହଁ ଆଖି ଲାଲ କରି ଗ୍ରୀକ୍ ସମ୍ରାଟ ଉଠି କହିଲେ — "ଚ୍ଚାଲକାସ୍ । ତମ ମୁହଁରୁ କେବେ ଶୁଭ ସମ୍ବାଦ ମୁଁ ଶୁଣି ପାରିଲି ନାହିଁ । ବ୍ରାଇସାଇସ୍‌କୁ ମୋ ନିକଟରୁ କାଢ଼ି ନେବାର ଏହା ଏକ କୌଶଳ, କିନ୍ତୁ କାହିଁକି ? ସମସ୍ତେ ତ ଯେଝା ଭାଗ ନେଇଛନ୍ତି । ମୋ ଉପରେ ଏ ଆକ୍ରୋଶ କାହିଁକି ? ମୁଁ ଗ୍ରୀକ୍ ସମ୍ରାଟ ! ମୋ ଭାଗରୁ ମୁଁ ବ୍ରାଇସାଇସ୍‌କୁ ଫେରାଇ ଦେବି କାହିଁକି ? ଏହା ବଦଳରେ ଗ୍ରୀକ୍‌ମାନେ ମୋତେ ଦେବେ କ'ଣ ? ମୁଁ ତାକୁ ହାତଛଡ଼ା କରିବାକୁ ଚାହେଁନା ।"

ଆକିଲସ୍ କହିଲେ—"ଲୁଣ୍ଠିତ ଦ୍ରବ୍ୟ ଭାଗ ଭାଗ ହୋଇଛି । ଏହାପରେ ଅନ୍ୟ ସହର ଦଖଲ କଲେ ଆପଣଙ୍କ ପାଇଁ ତାହା ରହିବ । ଆପଣ ଆପଣଙ୍କର ଭାଗ ପାଇସିବେ ।"

ଗ୍ରୀକ୍ ସମ୍ରାଟ କର୍ଣ୍ଣପାତ ନକରି କହି ଚାଲିଲେ—"ଆକିଲସ୍, ମୋର ମତଲବ ଜାଣିପାରିଛି । ମିଛକଥା କହି ତମେ କାମ ହାସଲ କରିବ ବୋଲି ଭାବୁଛ । ମୁଁ କହିବାକୁ ଚାହେଁ ଯେ ମୋର ଦାବୀ ମୁଁ ଛାଡ଼ିବିନି । ତମେ ହୁଅ ବା ଆଡ଼ର୍ଯ୍ୟୁସ୍ ହୁଅ ସେଥିରେ କିଛି ଯାଏ ଆସେନା ।"

ଆକିଲସ୍ କହିଲେ—"ଆପଣ ନିର୍ଲଜ୍ଜ । ଆପଣଙ୍କ ପାଇଁ ଏବଂ ଆପଣଙ୍କ ଭାଇଙ୍କ ପାଇଁ ଆମକୁ ଏଠାକୁ ଆସିବାକୁ ପଡ଼ିଛି, ଅଥଚ ଆପଣ ଆମ ଭାଗ ଉପରେ ଭାଗ ନେବାକୁ ଚାହାନ୍ତି । ଏ ପ୍ରକାର ନୀଚ ଇତର ହୋଇ ମୁଁ ଯୁଦ୍ଧ କରିବାକୁ ଚାହେଁନା । ଆଜି ମୁଁ ଫେରିଯାଉଛି ।"

—"ଗୁଲିଯାଇ ପାର । ତମକୁ ମୁଁ ଭୟ କରେନା । ମନେରଖ ମୁଁ ଗ୍ରୀକ୍ ସମ୍ରାଟ ଏଗାମେମନନ୍ । ମୋର କ୍ଷମତା କେତେ ଜାଣିଛ ? ମୁଁ ନିଜେ ଯାଇ ତମ ଶିବିର ସମସ୍ତଙ୍କଠାରୁ ସୁନ୍ଦରୀ ବ୍ରାଇସିସ୍‌କୁ ନେଇ ଆସିବି ।"

ଆକିଲିସ୍ ରାଗରେ ଖଣ୍ଡା ବାହାର କଲେ; କିନ୍ତୁ ଦେବୀ ଏଥିନା ଆସି ଆଢ଼ୁଆଳରେ ତାଙ୍କ ହାତ ଚୁପି ଧରିଲେ । ଆକିଲିସ୍ ଏଥିନାଙ୍କୁ ଦେଖି କହିଲେ— "ଆପଣ ବାଧାଦେଲେ କାହିଁକି ? ଏଗାମେମ୍‌ନନ୍‌କୁ ଉଚିତ ଶିକ୍ଷା ଦେବି । ଆପଣ ଘୁଞ୍ଚି ଯାଆନ୍ତୁ ।"

ଏଥିନା ପଥରୋଧ କରି କହିଲେ—"ଛି ଆକିଲିସ୍ ତମେ କଣ ପାଗଳ । ରାଗରେ କିଛି କରନାହିଁ । ତମ ବୀରତ୍ୱର ପୁରସ୍କାର ତମେ ପାଇବ । ବର୍ତ୍ତମାନ ଶାନ୍ତ ହୁଅ ।"

ଦେବୀ ଏଥିନାଙ୍କ କଥାନୁସାରେ ଆକିଲିସ୍ ଖଣ୍ଡାଟି ଖୋଳ ଭିତରେ ପୂରାଇ ଦେଲେ ଏବଂ ଏଗମେମ୍‌ନନ୍‌କୁ ରାଜା ବୋଲି ସମ୍ମାନ ନକରି କହିଲେ - "ତମର ଭାଗ୍ୟ ଭଲ ଆଜି ବଂଚିଗଲ । ନିଜେତ କେବେ ଯୁଦ୍ଧ କରିନାହିଁ ତେଣୁ ଧନରତ୍ନ ଉପରେ ତମର ମଧ୍ୟ ଅଧିକାର ନାହିଁ । ଗ୍ରୀକ୍‌ମାନେ ଭୀରୁ ଓ କାପୁରୁଷ । ତାହାନହେଲେ ଏହା ସହ୍ୟ କରନ୍ତେ କିପରି ? ଦେଖ ମୁଁ କହିଯାଉଛି ଟ୍ରୋଜାନ ବୀର ହେକ୍‌ଟରର ହାତରେ ଗ୍ରୀକ୍‌ମାନେ ହିଁନେ ଧ୍ୱଂସ ପାଇବେ । ଯେତେବେଳେ ସମୁଦ୍ର ତୀରରେ ସ୍ତୁପ ଆକାରରେ ମୃତଦେହ ଜମାହେବ, ମୋ କଥା ତମର ମନେପଡ଼ିବ ଏବଂ ଅଳର କଥା ମନେପଡି କାଳ ପୋଡ଼ି ମରିବ ।"

ଗ୍ରୀକ୍‌ମାନଙ୍କ ଭିତରୁ ବୃଦ୍ଧ ନେଷ୍ଟର ଆଦି କଥାଟିର ସମାଧାନ କରିବାକୁ ଇଚ୍ଛା କଲେ । ବୟସ ଶହେରୁ ଉପର ହେବ । ବେଶ ପ୍ରବୀଣ ସେ, କିନ୍ତୁ ଦୁଇଜଣଙ୍କ ଭିତରେ ସମାଧାନ ହେଲା ନାହିଁ ।

ଆକିଲିସ୍ କହିଲେ—ବ୍ରାଇସିସ୍‌କୁ ନେଇଯାଅ । ଗ୍ରୀକ୍‌ମାନେ ଦେଇଥିଲେ ଏବେ ଫେରାଇ ନିଅନ୍ତୁ । ବ୍ରାଇସିସ୍ ଛଡ଼ା ମୋର ଅନ୍ୟ କୌଣସି ଜିନିଷ ଉପରେ ହାତଦେଲେ ତମେ ମୁକ୍ତି ପାଇବ ନାହିଁ ।

ସେ ଧନ ସବୁ ଉଙ୍ଗପରେ ଫାଇସାଇସ୍‌କୁ ଗୋଟିଏ ବଡ଼ ଜାହାଜରେ ଚଢ଼ାଇ ଶହେ ପଶୁ ବଳୀଦାନ ପାଇଁ ନେଇ ଏପୋଲ ମନ୍ଦିରକୁ ଗଲେ ଆଡ଼ିସିଉସ୍ ଓ ଆଉ କେତେଜଣ ଗ୍ରୀକ୍ ଯୋଦ୍ଧା ।

ଏଣେ ଏଗମେମ୍‌ନନର ଅନୁଚରମାନେ ଆକିଲିସ୍ ଶିବିରକୁ ପଶିଗଲେ ଏବଂ ଆକିଲିସ୍‌ଙ୍କର କ୍ରୀତଦାସୀ ବ୍ରାଇସିସ୍‌କୁ ନେଇ ଆସିଲେ । ଯିବାବେଳେ ଆକିଲିସ କହିଲେ—"ତମର ଦୋଷ ନାହିଁ । ଯେ ପଠାଇଛି ତାହାର ଦୋଷ । ଶୁଣ, ତମେ ସବୁ ସାକ୍ଷୀ ହୋଇ ରହିଲ । ଯେତେବେଳେ ଏଗାମେମ୍‌ନନ୍ ମୋ ପାଇଁ ହତାଶରେ ସ୍ୱର୍ଗ ପଡ଼ିବ ସେତେବେଳେ ମୋ କଥା ତାକୁ ସ୍ମରଣ କରାଇଦେବ ।"

ଅନୁଚରମାନେ ବ୍ରାଇସିସ୍‌କୁ ନେଇ ଚାଲିଗଲେ । ଆକିଲିସ୍ ସମୁଦ୍ରର ବେଳାଭୂମିରେ ଠିଆ ହେଲେ । ଆଖିରୁ ଅଶ୍ରୁ ଝରିଲା । ସେ ଆଣ୍ଠୁମାଡ଼ି ମା'ଙ୍କୁ ପ୍ରାର୍ଥନା କଲେ । ଆକିଲିସ୍‌ଙ୍କର ମା' ସମୁଦ୍ରରାଜ୍ୟର କନ୍ୟା ଦେବୀ ଥେଟିସ୍ ।

ସହସା ନୀଳସମୁଦ୍ର ଭିତରୁ ବାହାରି ପଡ଼ିଲା ଗୋଟିଏ ଦେବୀ ମୂର୍ତ୍ତି ପୁଅର ବେଦନା ଆର୍ତ୍ତିକଣ୍ଠ ତାଙ୍କୁ ବିଚଳିତ କରିଛି ।

କହିଲେ—"ବାପରେ କାହିଁକି କାନ୍ଦୁଛୁ ? ତୁ ଏତେ ବଡ଼ ବୀର ଅଥଚ ତୋ ଆଖିରେ ଅଶ୍ରୁ ।" ସ୍ନେହରେ ସେ ହାତ ବୁଲାଇଲେ ।

ଆକିଲିସ ସବୁ କଥା ଖୋଲି କହିଲେ —ପୁଅର ଦୁଃଖରେ ମା ଆଖିରେ ଲୁହ ଦେଖାଦେଲା । ସେ କହିଲେ —" ଦୁଃଖ କରନା ବାପା । ଏହାର ପ୍ରତିଶୋଧ ମୁଁ ନେବି । ସମୟ ହେଲେ ମୁଁ ତୋତେ ପାଖକୁ ଡାକିନେବି ।" ଥେଟିସ୍ ଚାଲିଗଲେ ।

ଦେବତାମାନଙ୍କର ବାସଭୂମି ହେଲା ଅଲିମ୍ପାସ୍ ପର୍ବତ । ଦେବରାଜ ଜିଉସ ରାଜା । ଥେଟିସ୍ ରାଜା ଜିଉସ୍‌ଙ୍କ ପାଖକୁ ଆସି କହିଲେ—"ଦେବରାଜ ମୋର ଅପମାନର ଉପଯୁକ୍ତ ପ୍ରତିଶୋଧ ଆପଣ ନିଅନ୍ତୁ । ଏଗାମେମ୍‌ନନ୍ ମୋ ପୁଅକୁ ଯେଉଁପରି ଭାବରେ ଅପମାନ କରିଛି ତାହାର ପ୍ରତିକାର ହେଉ ।

ସେଡେଦିନ ପର୍ଯ୍ୟନ୍ତ ଆକିଲିସ୍ ଗ୍ରୀକ୍‌ମାନଙ୍କର ହୋଇ ଖଣ୍ଡା ଧରି ନାହିଁ । ଆପଣ ମୁଁ କରେ ଟ୍ରୋଜାନମାନଙ୍କୁ ଜିତିବାକୁ ଦିଅନ୍ତୁ । ଦାମ୍ଭିକ ଏଗାମେମ୍‌ନନ୍ ଯେପରି ବୁଝି ପାରେ ଯେ ସେ କାହାକୁ ଅପମାନ କରିଛି ।"

ଜିଉସ୍ ସ୍ନେହରେ ଗୋଟିଏ ଆଡ଼କୁ ଅନାଇ ମୁଣ୍ଡ ହଲାଇଲେ ।

## ତିନି

ଗୁହୁଁ ଗୁହୁଁ ରାତି ଗଭୀର ହେଲା । ମଣିଷ ଓ ଦେବତାମାନେ ଶୋଇ ପଡ଼ିଲେ । ଦେବରାଜଙ୍କ ଆଖିରେ କିନ୍ତୁ ନିଦ ନ ଥିଲା । ଆକିଲିସ୍‌କୁ କିଭଳି ଭାବରେ ସାନ୍ତ୍ୱନା ଦେବେ ଭାବୁଥିଲେ ।

ସେ ଭାବିଲେ ଏଗମେମ୍‌ନନ୍‌କୁ ସ୍ୱପ୍ନରେ ବିଭ୍ରାନ୍ତ କରିବା ପାଇଁ ସ୍ୱପ୍ନ ଦେବତାକୁ ଡକାଗଲା । ଦେବରାଜ କହିଲେ--"ତମେ ଶିଘ୍ର ଏଗାମେମନ୍‌ଙ୍କ ଶିବିରକୁ ଯାଅ ଏବଂ ସ୍ୱପ୍ନରେ ମୋର ସଂବାଦ ଜଣାଅ ଯେ ସେମାନେ ଯେପରି ଡେରି ନକରି ଟ୍ରୟ୍ ଆକ୍ରମଣ କରିବେ । ଏ ସମୟରେ ଟ୍ରୟ୍ ଆକ୍ରମଣ କଲେ ଜିତିପାରିବେ ।"

ସ୍ୱପ୍ନ ଦେବତା ଏଗମେମନନ୍‌ଙ୍କ ଶିବିରକୁ ଯାଇ ବୃଦ୍ଧ ନେଷ୍ଟର ଛଦ୍ମ-ବେଶ ଧାରଣକରି ଏଗମେମନନ୍‌ଙ୍କୁ ସ୍ୱପ୍ନରେ ଦେଖାଦେଇ ତାଙ୍କୁ ଜିଉସର ସମସ୍ତ ଉପଦେଶ ଶୁଣାଇ ପୁଣି ଅଲିମ୍ପାସ୍ ଫେରି ଆସିଲେ ।

ଗ୍ରୀକ୍ ସମ୍ରାଟ ଏଗମେମନନ୍‌ଙ୍କ ନିଦ ଭାଙ୍ଗିଗଲା । ସ୍ୱପ୍ନକଥା ମନରେ ଜାଗିଥାଏ । ରାଜାପୋଷାକ ପିନ୍ଧି ରାଜଦଣ୍ଡ ହାତରେ ଧରି ଭୋର ନହେଉଣୁ ଅନ୍ୟ ଗ୍ରୀକ୍ ଯୋଦ୍ଧାଙ୍କ ଶିବିର ଆଡ଼କୁ ଗଲେ । ମନ୍ତ୍ରଣାସଭା ବସିଲା । ଯୋଦ୍ଧାମାନେ ଯୋଗଦେଲେ ।

ଏଗମେମନନ୍ ସ୍ୱପ୍ନର କାହାଣୀ ବର୍ଣ୍ଣନା କରି କହିଲେ ଯେ ଆଉ ଡେରି କରିବା ଉଚିତ ନୁହେଁ । ସୈନ୍ୟ ସାମନ୍ତ ପ୍ରସ୍ତୁତ କରନ୍ତୁ । ବର୍ତ୍ତମାନ ଆମେ ଟ୍ରୟ୍ ଆକ୍ରମଣ କରିବା । ଜିଉସ୍‌ଙ୍କ ଦୟାରେ ଆମେ ନିଶ୍ଚୟ ଯୁଦ୍ଧରେ ଜିତିବା ।

ଗ୍ରୀକ୍ ଶିବିରରେ ଚହଳ ପଡ଼ିଗଲା । ଅଗଣିତ ଗ୍ରୀକ୍ ସୈନ୍ୟ ଅସ୍ତ୍ର ଶସ୍ତ୍ର ନେଇ ପ୍ରସ୍ତୁତ ହେଲେ । ଏଗମେମନନ୍ ତାଙ୍କର ସୈନ୍ୟମାନଙ୍କୁ ମନୋବଳ ପରୀକ୍ଷା କରିବା ପାଇଁ କହିଲେ—"ସୈନ୍ୟଗଣ ! ତମେ କଣ ଏଠାରେ ରହିବାକୁ ଚାହଁ ? ଗ୍ରୀସ୍‌କୁ ଆସିବାବେଳେ ଦେବରାଜ ଜିଉସ୍ ଆମକୁ ଆଶ୍ୱାସନା ଦେଇଥିଲେ ଯେ ଆମେ ଜିତିବା; କିନ୍ତୁ ନଅବର୍ଷ ଦେଖୁ ଦେଖୁ କଟିଗଲା । ଆମେ ଦୀର୍ଘ ଦିନ ଧରି ଟ୍ରୟ୍‌କୁ ଅବରୋଧ କରିରଖିଲୁ ; କିନ୍ତୁ ଜୟଲାଭର କୌଣସି ଲକ୍ଷଣ ଦେଖାଯାଇନାହିଁ—ଜାହାଜଗୁଡ଼ିକ ଜୀର୍ଣ୍ଣ ପଡ଼ିଲାଣି । ନଅବର୍ଷ ଧରି ଆମର ସ୍ତ୍ରୀ ପୁରୁଷ ଆମକୁ ଅପେକ୍ଷା କରିଛନ୍ତି । ଏପରି ଭାବରେ ଆଉ କେତେ ଦିନ ଅପେକ୍ଷା କରିବା, ଚାଲ ଏଥର ନିଜ ଦେଶକୁ ଫେରିଯିବା । ଜାହାଜ ପ୍ରସ୍ତୁତ । ଟ୍ରୟ୍ ଜୟଲାଭ ସୁଦୂର ପରାହତ ।

ଏଗମେମ୍‌ନନ୍‌ଙ୍କ କଥାରେ ମୁକ୍ତ ଗ୍ରୀକ୍ ସୈନିକମାନେ ମହାନନ୍ଦରେ ଜାହାଜ ଆଡ଼କୁ ଧାଇଁଲେ । ଏଗମେମ୍‌ନନ୍‌ଙ୍କର ପରୀକ୍ଷାଫଳ ବିପରୀତ ହେଲା । ଏହା ଦେଖି ହୀରା ଏଥିନ ପାଖକୁ ଧାଇଁଯାଇ କହିଲେ—"ତମେ କିଛି ଗୋଟିଏ ବ୍ୟବସ୍ଥା କର । ଗ୍ରୀକ୍‌ମାନଙ୍କୁ ଫେରାଅ । ସତକୁ ସତ ଯଦି ସେମାନେ ଫେରିଯାଆନ୍ତି, ହେଲେନ ରହିଯିବ ଏବଂ ପେରିସ୍ ତାର ଉପଯୁକ୍ତ ଫଳ ପାଇବ ନାହିଁ । କହିଲ ଆମ ମୁହଁ ରହିବ କେଉଁଠି ?"

ଏହା ଶୁଣି ଏଥିନା ଗ୍ରୀକ୍ ଜାହାଜ ପାଖକୁ ଆସିଲେ । ଜାହାଜ ପାଖରେ ଠିଆ ହୋଇଥିଲେ ବୀର ଅଡିସିଉସ । ସେ ହତବାକ୍ ଦେଖାଯାଉଥିଲେ । ହଠାତ୍ ଅଡିସିଉସ୍‌ଙ୍କ କାନପାଖରେ କିଏ କହିଲା—"ଅଡ଼ିସିଉସ୍ । ବୀର ଅଡ଼ିସିଉସ୍ ତମେ କ'ଣ ସତକୁ ସତ ରଣରୁ ଛନ୍ଦଭଙ୍ଗଦେଇ ପଳାଇ ଯାଉଛ ? ଯେଉଁ ହେଲେନ ପାଇଁ ହଜାର ହଜାର ଗ୍ରୀକ୍ ବୀର ପ୍ରାଣ

ବିସର୍ଜନ କରିଛନ୍ତି ଶେଷରେ ତାକୁ ଟ୍ରୋଜେନ୍ ହାତରେ ଛାଡ଼ି ଚାଲିଯାଉଛ ? ଅଡ଼ିସିଉସ୍ ତମେ କଣ ଏରକମ ଲଜ୍ଜା ଅପମାନ ମୁଣ୍ଡପାତି ବରଣ କରିନେବ ?"

ଅଡ଼ିସିଉସ୍ ମନେ କଲେ ଏ ଯେ ତାଙ୍କ ଅନ୍ତରର ବାଣୀ । ସେ ମୁହଁ ଫେରାଇ ଦେଖନ୍ତି ଯେ ପାଖରେ ଠିଆ ହୋଇଛନ୍ତି ଦେବୀ ଏଥିନା ।

"ମୁଁ କଣ କରିବ ? କିଛି ଭାବିପାରୁନି ଯେ ?"

—"ଭାବିବାର କିଛିନାହିଁ ଅଡ଼ିସିଉସ୍ ! ଗ୍ରୀକ୍‌ମାନଙ୍କୁ ଫେରାଇ ଆଣ । ଏବେ ବି ଜାହାଜ ଛାଡ଼ିନାହିଁ, ଗ୍ରୀକ୍ ସୈନ୍ୟମାନଙ୍କୁ ଫେରାଇ ଅଣାଯାଇପାରିବ ।"

ଅଡ଼ିସିଉସ୍ ଦ୍ୱିଧା ନ କରି ଏଗମେମ୍‌ନନ୍‌ଙ୍କ ପାଖକୁ ଆଗେଇ ଗଲେ ଏବଂ ତାଙ୍କ ନିକଟରୁ ରାଜଦଣ୍ଡଟି ଛଡ଼ାଇ ନେଇ ଗ୍ରୀକ୍ ସୈନ୍ୟମାନଙ୍କ ପାଖକୁ ଗଲେ । ଗ୍ରୀକ୍ ସୈନ୍ୟମାନଙ୍କୁ ସମ୍ବୋଧନ କରି ସେ ଉଦ୍‌ବୋଧନା ଦେଇ ଅନେକ କହିଗଲେ ଏବଂ ଜଣାଇଲେ ଯେ ସମ୍ରାଟ ଯେଉଁ ପରୀକ୍ଷା କଲେ ବୋକା ଗ୍ରୀକ୍‌ମାନେ ତାହା ବୁଝିପାରିଲେ ନାହିଁ ।

ଅଡ଼ିସିଉସ୍‌ଙ୍କର ଭାଷଣ ଓ ତାଙ୍କ ହାତରେ ରାଜଦଣ୍ଡ ଦେଖି ଉତ୍ତେଜିତ ହୋଇ ଜାହାଜରୁ ସୈନ୍ୟମାନେ ଚାଲିଆସିଲେ । ଗ୍ରୀକ୍‌ମାନଙ୍କ ଭିତରେ ଥାଇସାଇଟିସ୍ ନାମରେ ଗୋଟିଏ ଲୋକଥିଲା । ସେ ଗଣ୍ଡଗୋଳ କରିବାରୁ ଅଡ଼ିସିଉସ୍ ତାକୁ ମାଡ଼ଦେଇ ଚୁପ୍ କରାଇଦେଲେ ।

"ଗ୍ରୀକ୍ ସୈନ୍ୟମାନେ ଫେରି ଆସିବାର ଦେଖି ଏଗମେମନନ୍ କହିଲେ 'ତମେ ଫେରି ଆସିବାରେ ମୁଁ ଆନନ୍ଦିତ । ଆଉ ଡେରି ନକରି ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅ । ବର୍ଚ୍ଛା, ଢାଲ, ଖଣ୍ଡା, ସଜାଡ଼ । ଘୋଡ଼ାଗୁଡ଼ିକୁ ଖୁଆଇ ଦିଅ । ଦେଖ କେହି ପଳାଇବାକୁ ଉଦ୍ୟମକଲେ ତାର ମୁକ୍ତି ନାହିଁ ।

ସମ୍ରାଟ ଏଗମେମନନ୍‌ଙ୍କ କଥାଶୁଣି ଜୟଧ୍ୱନି ହେଲ । ସେମାନେ ପ୍ରସ୍ତୁତ ହୋଇଗଲେ । ଦେବତାମାନଙ୍କର ଶାନ୍ତି ଆନନ୍ଦ ପାଇଁ ସମୁଦ୍ର-ଧାରରେ କେତେଗୁଡ଼ିଏ ପଶୁବଳି ଦାନକଲେ ଏବଂ ପ୍ରାର୍ଥନାକରି ଜଣାଇଲେ—"ହେ ଝଡ଼ ଓ ମେଘର ଦେବତା ଦେବରାଜ ଜିଉସ୍ ! ଆମର ସହାୟ ହୁଅ । ସୂର୍ଯ୍ୟୋଦୟ ପୂର୍ବରୁ ଯେପରି ଆମେ ଟ୍ରୟକୁ ଧୂଳିସାତ୍ କରିପାରିବୁ, ସେଥିପାଇଁ ଆମକୁ ଶକ୍ତି ଦିଅ ।"

ଜିଉସ୍ ଏହାଶୁଣି ହସିଲେ ।

ତା'ପରେ ପ୍ରବଳ ତରଙ୍ଗ ପରି ଗ୍ରୀକ୍ ବାହିନୀ ଟ୍ରୟ ଆଡ଼କୁ ଚାଲିଲେ । ସୂର୍ଯ୍ୟ ଆଲୋକରେ ତାଙ୍କ ଅସ୍ତ୍ରଶସ୍ତ୍ର ଝଲସି ଉଠିଲା । ତାଙ୍କର ରଣହୁଂକାରରେ ଆକାଶ, ପାଣି, ପବନ କମ୍ପି ଉଠିଲା ।

## ଚାରି

ଗ୍ରୀକ୍ ସୈନ୍ୟମାନଙ୍କର ଆକ୍ରମଣ କରୁଥିବା ସଂବାଦ ପାଇଁ ଟ୍ରୋଜାନ-ମାନେ ପ୍ରସ୍ତୁତ ହୋଇଗଲେ । ଅଗଣିତ ଟ୍ରୋଜାନ ସୈନ୍ୟ ଆଗେଇ ଚାଲିଲେ । ପରସ୍ପର ଭେଟିଲେ ତୁମୁଳ ଯୁଦ୍ଧ ଚାଲିଲା ।

ଟ୍ରୋଜାନ ସୈନ୍ୟ ପରିଚାଳନା କରୁଛନ୍ତି ପେରିସ୍ । ତାଙ୍କ କାନ୍ଧରୁ ଅଣ୍ଟାପର୍ଯ୍ୟନ୍ତ ଲମ୍ବିଛି ବାଘର ଛାଲ । କାନ୍ଧରେ ଧନୁ, ଅଣ୍ଟାରେ ତରବାରି ଓ ଶାଣିତବର୍ଚ୍ଛା । ସେ ଆହ୍ୱାନ କଲେ ଦ୍ୱନ୍ଦ୍ୱ ଯୁଦ୍ଧ ।

ମେନେଲାଓ ରଥରୁ ଝାମ୍ପି ଆସିଲେ । ବହୁଦିନପରେ ସେ ପ୍ରତିହିଂସାର ସୁଯୋଗ ପାଇଛନ୍ତି । ପେରିସ୍ ଡରିଯାଇ ସୈନ୍ୟମାନଙ୍କ ଭିତରେ ପଶିଗଲେ । ପେରିସଙ୍କର ଭାଇ ହେକ୍‌ଟର ଏହା ଦେଖି ପେରିସଙ୍କୁ କହିଲେ, 'ତୁମକୁ

ଲାଜ ଲାଗୁନାହିଁ ? ଏଇ ସାହସରେ କଣ ପରସ୍ତ୍ରୀକୁ ଚୋରି କରିଥିଲ । ମେନେଲାସ ତୁମ ଆଗରେ—ଶକ୍ତିର ପରୀକ୍ଷା ଦେବାକୁ ହେବ । ସ୍ତ୍ରୀଙ୍କ ଭଳି ତୁମର ରୂପ ଅଛି; କିନ୍ତୁ ପୁରୁଷ ଭଳି ସାହସ ନାହିଁ । ଛି, ଛି ତୁମପାଇଁ ମୋ ମୁହଁ ତଳକୁ ହୋଇଯାଉଛି ।"

ହେକ୍‌ଟରଙ୍କ କଥାରେ ପେରିସ ଲଜ୍ଜିତ ହୋଇ କ୍ଷମା ମାଗିଲେ ଏବଂ କହିଲେ, 'ଆମେ ଦୁ'ଜଣ ଲଢ଼ିବୁଁ; ବାକି ଟ୍ରୋଜାନ ଓ ଗ୍ରୀକ୍ ସୈନ୍ୟମାନେ ବନ୍ଧୁ ଭାବରେ ତାହା ଦେଖନ୍ତୁ । ଆମ ଭିତରୁ ଯେ ଜିତିବ ସେ ହେଲେନକୁ ଲାଭ କରିବ । ଗ୍ରୀକ୍‌ମାନେ ଶାନ୍ତିରେ ଫେରିଯିବେ । ତମେ ଏକଥା ଯାଇ କୁହ ।

—"ଠିକ୍ ବୀର ଭଳି କଥା କହୁଛ ।" "କହି ହେକ୍‌ଟର ହାତରେ ବର୍ଚ୍ଛା ନେଇ ଗ୍ରୀକ୍‌ମାନଙ୍କ ଆଡ଼କୁ ଆଗେଇଗଲେ । ଏହା ଦେଖି ଗ୍ରୀକ୍ ସୈନ୍ୟମାନେ ତୀର ମାରିବା ଆରମ୍ଭ କଲେ; କିନ୍ତୁ ଏଗାମେମ୍‌ନନ୍ ତାଙ୍କୁ ମନା କରି କହିଲେ "ହେକ୍‌ଟର ବନ୍ଧୁ ଭାବରେ କଣ କହିବାକୁ ଆସୁଛନ୍ତି । ଅପେକ୍ଷା କର ।"

ରାଜାଙ୍କ ଆଦେଶରେ ଗ୍ରୀକ୍‌ମାନେ ନୀରବ ହେଲେ । ହେକ୍‌ଟର ତାଙ୍କର ପ୍ରସ୍ତାବ ଜଣାଇଲେ ।

ପ୍ରସ୍ତାବ ଶୁଣି ମେନେଲାସ ଆନନ୍ଦିତ ହେଲେ । ସେ କହିଲେ ଯା'ହେଉ ଯୁଦ୍ଧ ଏଇଠାରେ ଶେଷହେବ । ଯୁଦ୍ଧ ପୂର୍ବରୁ ଦେବରାଜ ଜିଉସ୍‌ଙ୍କୁ ପଶୁବଳି ଦାନ କର । ଟ୍ରୟର ରାଜା ପ୍ରାୟାମଙ୍କୁ ମଧ୍ୟ ଏଠାକୁ ଆସିବାକୁ ପଡ଼ିବ । ପେରିସ୍ କିମ୍ବା ହେକ୍‌ଟରଙ୍କୁ ମୋର ବିଶ୍ୱାସ ନାହିଁ; କିନ୍ତୁ ସେ ତ ବୟସ୍କ ପ୍ରବୀଣ ବ୍ୟକ୍ତି । ବିଶ୍ୱାସ ଭଙ୍ଗ ହେବନାହିଁ ।

ସମସ୍ତେ ଅସ୍ତ୍ରଶସ୍ତ୍ର ମାଟିରେ ରଖି ଏଦ୍ୱନ୍ଦ୍ୱ ଯୁଦ୍ଧ ଦେଖିଲେ । ରାଜା ପ୍ରାୟାମଙ୍କୁ ଖବର ଦେବା ପାଇଁ ଦୂତ ପଠାଗଲା ଓ ଜିଉସ୍‌ଙ୍କୁ ପଶୁବଳି ଦିଆଗଲା ।

ଏତିକିବେଳେ ହୀରା ତାଙ୍କ ସହଚରୀ ଆଇରିସ୍‌ଙ୍କୁ ହେଲେନ୍ ପାଖକୁ ପଠାଇ ଦେଲେ । ଆଇରିସ୍ ପ୍ରାୟାମଙ୍କର କନ୍ୟାର ଛଦ୍ମବେଶଧରି ହେଲେନ ପାଖରେ ପହଞ୍ଚିଲେ । ହେଲେନ ସେତେବେଳେ ଗୋଟିଏ କନା ଉପରେ ଟ୍ରୟ ଯୁଦ୍ଧର ଛବି ଆଙ୍କୁଥିଲେ । ଆଇରିସ ହେଲେନ୍‌କୁ କହିଲେ—"ଆସ, ତମକୁ ଗୋଟିଏ ଜିନିଷ ଦେଖାଇଦେବି । ଗ୍ରୀକ୍ ଟ୍ରୋଜାନ ସୈନ୍ୟମାନେ ତାଙ୍କର ଅସ୍ତ୍ରଶସ୍ତ୍ର ପକାଇ ଦ୍ୱନ୍ଦ୍ୱ ଯୁଦ୍ଧ ଦେଖୁଛନ୍ତି । ତମପାଇଁ ପେରିସ୍ ଓ ମେନେଲାସଙ୍କ ଭିତରେ ଯୁଦ୍ଧ ଚାଲିଛି, ଏ ଯୁଦ୍ଧରେ ଯେ ଜିତିବ ସେ ହେବ ତମର ପତିଦେବତା ।"

ଅନେକଦିନ ପରେ ମେନେଲାସ୍‌ଙ୍କ କଥା ଶୁଣି ପଛ କଥା—ବାପା ମା, ଗ୍ରୀସ୍ ଝିଅ କଥା ତାଙ୍କର ମନେ ପଡ଼ିଲା । ଆଖିରେ ତାଙ୍କର ଭରିଗଲା ଲୁହ । କୌଣସି ପ୍ରକାରେ ନିଜକୁ ସମ୍ଭାଳି ଗୋଟିଏ ଅଙ୍ଗବାସ ଟାଣିଆଣି ଦୁଇଜଣ ଦାସୀ ସହିତ ଯୁଦ୍ଧକ୍ଷେତ୍ରକୁ ଚାଲିଲେ ।

ହେଲେନଙ୍କୁ ଦେଖିବା ମାତ୍ରକେ ଚତୁର୍ଦ୍ଦିଗରେ ଚହଳ ପଡ଼ିଗଲା । ଏହାରି ପାଇଁ ଏତେ ଲୋକକ୍ଷୟ ଯୁଦ୍ଧ । ଗୋଟିଏ ପାଖରେ ରାଜା ପ୍ରାୟାମ ସିଂହାସନରେ ବସିଥିଲେ । ସେ ହେଲେନ୍‌ଙ୍କୁ ଡାକିଲେ । ହେଲେନ୍ ତାଙ୍କ କଡ଼ରେ ସଙ୍କୋଚରେ ବସିଲେ ।

ପ୍ରାୟାମ କହିଲେ—"ଦୋଷ ତୁମର ନୁହେଁ—ଆମଭାଗ୍ୟର । ତମେ ଗ୍ରୀକ୍ ବୀରମାନଙ୍କୁ ଚିହ୍ନାଇଦିଅ ।" ହେଲେନ୍ ଗ୍ରୀକ୍ ବୀରମାନଙ୍କୁ ଚିହ୍ନାଇ ଦେଲେ । ପ୍ରାୟାମ ସେମାନଙ୍କ ସମ୍ପର୍କରେ ଅନେକ କଥା ପଚାରି ବୁଝିନେଲେ ।

ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ପ୍ରାୟାମ ଓ ଏଗାମେମ୍‌ନନ୍ ପ୍ରତିଜ୍ଞା ପାଠ କଲେ ଯେ କୌଣସି ପ୍ରକାର ଅନ୍ୟାୟ ଯୁଦ୍ଧ କରିବେ ନାହିଁ । ଏହାପରେ ପ୍ରାୟାମ ଉଠିପଡ଼ି କହିଲେ—"ଜିଉସ୍ ଜାଣନ୍ତି କିଏ ଜିତିବ । ମୁଁ ଏହି ବୟସରେ ପୁଅର ଏହି ଦ୍ୱନ୍ଦ୍ୱ ଯୁଦ୍ଧ ଆଖିରେ ଦେଖି ପାରିବିନାହିଁ ।

ସେ ରଥରେ ଚଢ଼ି ରାଜପ୍ରାସାଦକୁ ଫେରି ଆସିଲେ । ହେକ୍ଟର ଓ ଅଡ଼ିସିଉସ ଯାଇ ଯୁଦ୍ଧର ସ୍ଥାନ ନିର୍ବାଚନ କଲେ ଏବଂ ଏହାପରେ କଥା ହେଲା ପ୍ରଥମେ କିଏ ଅସ୍ତ୍ରାଘାତ କରିବ ।

ହେକ୍ଟର ମୁଣ୍ଡରୁ ହେଲେମେଟ୍ ଖୋଲି ତା ଭିତରେ ଦୁଇଟି ଗୋଟ ଗୋଡ଼ି—ଗୋଟିଏ ପେରିସ୍ ଓ ଅନ୍ୟଟି ମେନେଲାସ ପାଇଁ ରଖି ପଛକୁ ମୁହଁ କରି ହେଲମେଟ୍‌କୁ ଜୋର୍‌ରେ ହଲାଇଦେଲେ । କଥା ହେଲା ଯାହାର ଗୋଡ଼ି ପ୍ରଥମେ ପଡ଼ିବ ସେ ପ୍ରଥମେ ଅସ୍ତ୍ରାଘାତ କରିବ । ସମସ୍ତେ ଦେଖିଲେ ଯେ ପେରିସ୍‌ର ଗୋଡ଼ି ପ୍ରଥମେ ତଳେ ପଡ଼ିଲା ।

ପେରିସ୍ ଦେହରେ ବର୍ମ ଖଞ୍ଜା ହୋଇଥିଲା । କାନ୍ଧଉପରେ ପିତଳର ଢାଲ୍ ଓ ଧନୁ । ଅଣ୍ଟାରେ ରୂପେଲି ତରବାରୀ ମୁଣ୍ଡରେ ବରାଟ ବରାଟ କସ୍ରାଟ । କସ୍ରାଟ ଶୀର୍ଷରେ ପର । ହାତରେ ବର୍ଛା । ମେନେଲାସର ପୋଷାକ ମଧ୍ୟ ଏହି ପ୍ରକାରର । ମୁହୂର୍ତ୍ତିକ ପାଇଁ ଦୁଇ ପ୍ରତିଦ୍ୱନ୍ଦ୍ୱୀ ପରସ୍ପରକୁ ଅନାଇଲେ । ଦୁ'ଜଣଙ୍କ ଆଖିରେ ରାଗ ଘୃଣା । ପେରିସ୍ ପ୍ରଥମେ ମେନେଲାସକୁ ଲକ୍ଷ୍ୟକରି ଜୋର୍‌ରେ ବର୍ଛା ମାରିଲେ । ବର୍ଛାଟି ମେନେଲାସର ଢାଲକୁ ଭେଦ କରି ନ ପାରି ତଳେ ପଡ଼ିଗଲା ।

ମେନେଲାସ ଦେବରାଜ ଜିଉସଙ୍କୁ ସ୍ମରଣକରି ବର୍ଛା ଛାଡ଼ିଲେ । ବର୍ଛାଟି ପେରିସର ଢାଲଫୁଟାଇ ବର୍ମ ଭେଦ କଲା, କିନ୍ତୁ ମରଣ ମୁହଁରୁ ବଞ୍ଚିଗଲେ ପେରିସ୍ ।

ତାପରେ ମେନେଲାସ ତରବାରୀ ବାହାର କରି ପେରିସ ମୁଣ୍ଡ ଆଡକୁ ଲକ୍ଷ୍ୟ କରି ପରିଚାଳନା କଲେ; କିନ୍ତୁ ପେରିସ୍‌ର ହେଲମେଟରେ ଲାଗି ତାହା ଭାଙ୍ଗି ଦୁଇ ଖଣ୍ଡ ହୋଇଗଲା ।

ମେନେଲାସ କହିଉଠିଲେ—"ପ୍ରଭୁ ଜିଉସ ତମେ କଣ ଏତେ ନିଷ୍ଠୁର । ମୋତେ ଏବେବି ସୁଯୋଗରୁ ବଞ୍ଚିତକଲ । ତା'ପରେ ସେ ପେରିସ୍‌କୁ ଧରି ଗ୍ରୀକ୍ ଆଡ଼କୁ ଟାଣିଲାବେଳେ ହେଲମେଟର

ଚମଡ଼ା ଫିତାଟି ପେରିସ୍‌ ବେକରେ ଫାନ୍ଦୀ ପରି ଲଗିଲା । ଅଳ୍ପକେ ମୃତ୍ୟୁ ଘଟିଥାନ୍ତା; କିନ୍ତୁ ସେଇ ମୁହୂର୍ତ୍ତିରେ ଏଫ୍ରୋନଇଟି ଶୂନ୍ୟରୁ ହେଲେମେଟର ଫିତାଟି କାଟି ପକାଇଲେ । ଏହାଫଳରେ ପେରିସ୍‌କୁ ମୁକ୍ତି ମିଳିଲା । ରାଗରେ ଅନ୍ଧ ହୋଇ ମେନେଲସ ତାଙ୍କର ଜଣେ ସଙ୍ଗୀ ପାଖରୁ ଗୋଟିଏ ବର୍ଚ୍ଛା ଧରି ପେରସ୍‌କୁ ଆକ୍ରମଣ କଲେ । ଏଫ୍ରୋଡ଼ାଇଟି ହଠାତ୍‌ ଘନ କୁହୁଡ଼ି ସୃଷ୍ଟିକରି ପେରିସ୍‌ଙ୍କୁ ମେନେଲସଙ୍କର ଦୃଷ୍ଟି ପଥର ଆଢ଼ୁଆଳକୁ ନେଇଗଲେ ଏବଂ ତା'ପରେ ସେହି କୁହୁଡ଼ି ଅନ୍ତରାଳରେ ଦ୍ରୁତ ଗତିରେ ପେରିସ୍‌କୁ ନେଇ ଅଦୃଶ୍ୟ ହୋଇଗଲେ ।

ମେନେଲସ ପାଗଳ ପରି ପେରସଙ୍କୁ ଖୋଜି ବୁଲିଲେ । ଏଫ୍ରୋଡାଇଟି ପେରସ୍‌ଙ୍କୁ ନିରାପଦ ସ୍ଥାନକୁ ନେଇଯାଇଥିଲେ । ଏଗାମେମନନ୍‌ ଠିଆ ହୋଇ କହିଲେ—ଟ୍ରୋଜାନମାନେ ଶୁଣନ୍ତୁ । ମେନେଲସ ଏ ଯୁଦ୍ଧରେ ଜୟୀ ହୋଇଛନ୍ତି । ତେଣୁ ହେଲେନକୁ ଫେରାଇଦିଅନ୍ତୁ; ଆମେ ଦେଶକୁ ଫେରଯିବୁ ।

## ପାଞ୍ଚ

ଏଗମେମ୍‌ନନଙ୍କ କଥାରେ ଗ୍ରୀକ୍‌ମାନେ ଜୟ ଧ୍ୱନିକଲେ । ଅଲିମ୍ପସ ପର୍ବତର ହୀରା ଓ ଏଥିନା ବସି ବିଚାର କଲେ କ୍ରମେ ଏତେ ସହଜରେ ଏ ଯୁଦ୍ଧ ସରିଯିବ । ପେରସ୍‌ ଶାସ୍ତି ନ ପାଇ ରକ୍ଷା ପାଇଯିବ । ଏଥିନା ଉଲ୍‌କା ବେଗରେ ଓହ୍ଲାଇ ଆସି ଜଣେ ସାଧାରଣ ସୈନିକର ଛଦ୍ମବେଶରେ ଟ୍ରୋଜାନମାନଙ୍କ ଭିତରେ ପଶିଗଲେ । ଟ୍ରୋଜାନମାନଙ୍କ ଭିତରେ ପାଣ୍ଡୋରାସ ନାମକ ଜଣେ ଖୁବ୍‌ ଓସ୍ତାଦ୍‌ ତୀରନ୍ଦାଜ ଥିଲା । ଛଦ୍ମବେଶ ଧରି ଏଥିନା ତାକୁ କହିଲେ— "ଏଇତ ସୁଯୋଗ । ଦେଖୁଛ କି'ଣ ମେନେଲସ ଏତିକିବେଳେ ଅସତର୍କ । ଗୋଟାଏ ତୀର ମାରି ଶେଷକର । ମେନେଲସକୁ

ମାରିପାରିଲେ ଟ୍ରୋଜାନମାନେ ଜୟୀ ହେବେ । ଗ୍ରୀକ୍‌ମାନେ ଭୟରେ ଖସିପିବେ ।

ପାଣ୍ଡାରସ୍ ପ୍ରଲୋଭନ ଦମନ କରି ନପାରି ତୂଣୀରରୁ ଗୋଟିଏ ଭଲ ଶର ବାହାର କରି ଆଡ଼ୁଆଳରେ ମେନେଲସଙ୍କୁ ଲକ୍ଷ କରି କାନପର୍ଯ୍ୟନ୍ତ ଟାଣି ଶର ମାରିଲା ।

ମୁହୂର୍ତ୍ତକ ମଧ୍ୟରେ ମେନେଲସ ଆଡ଼କୁ ଶର ଛୁଟିଲା । ଦେବୀ ଏଥିନା ଠିକ୍ ଏତିକବେଳେ ପାଣ୍ଡାରସର ହାତଟିକୁ ଟିକିଏ ହଲାଇ ଦେବାରେ ମେନେଲସର କଟିବନ୍ଧରେ ସେ ଶର ବିନ୍ଧି କଲା । ମେନେଲସ ଆହତ ହେଲେ—ରକ୍ତ ଝରିଲା ।

ଏହି ଅପ୍ରତ୍ୟାଶିତ ଘଟଣାରେ ଗ୍ରୀକ୍‌ମାନେ ବିଚଳିତ ହୋଇ ପଡ଼ିଲେ । ମେନେଲସଙ୍କୁ ଶୋଇଦିଆଗଲା ଏବଂ କ୍ଷତସ୍ଥାନରେ ଔଷଧ ଲଗାଇ ଦିଆଗଲା ।

ଏଗମେନନ୍ ରାଗରେ ଉନ୍ମତ୍ତହୋଇ ସମସ୍ତ ଗ୍ରୀକ୍ ସୈନ୍ୟଙ୍କୁ ଆହ୍ୱାନକରି କହିଲେ—'ଟ୍ରୋଜାନମାନେ ବିଶ୍ୱାସ ଭଙ୍ଗ କରିଛନ୍ତି । ଶାସ୍ତି ଦେବା ଦରକାର । ପ୍ରଭୁ ଜିଉସ୍ ଆମର ନିଶ୍ଚୟ ସହାୟ ହେବେ !

ପୁଣି ଦୁଇଦଳ ଭିତରେ ପ୍ରବଳ ଯୁଦ୍ଧ ଆରମ୍ଭ ହେଲା । ଗ୍ରୀକ୍‌ମାନଙ୍କୁ ଟ୍ରୋଜାନମାନେ ବାଧାଦେଲେ । ଅସ୍ତ୍ରର ଝନତ୍କାର ଏବଂ ଆହତର ଆର୍ତ୍ତନାଦରେ ଆକାଶ ପବନ କଂପି ଉଠିଲା । ଯୁଦ୍ଧକ୍ଷେତ୍ରରେ ରକ୍ତନଦୀ ବହିଗଲା ।

ଗ୍ରୀକ୍ ବୀର ଡାୟୋମେଡ଼ିସ୍ ଚୁପ୍‌କରି ଠିଆହେବାର ଦେଖି ଗ୍ରୀକ୍ ସମ୍ରାଟ ତାଙ୍କୁ ଧିକ୍‌କାର କଲେ । ସେ ହୁଙ୍କାର କରି ଶତ୍ରୁ ଆଗକୁ ଆଗେଇ ଗଲେ ।

ଅଲମ୍ପାସ ପର୍ବତରେ ଥିବା ଦେବତାମାନେ ଯୁଦ୍ଧରେ ଯୋଗ ଦେଇଛନ୍ତି । ଟ୍ରୋଜାନମାନଙ୍କ ଦଳରେ ମାର୍ସ ଯୋଗ ଦେଇଛନ୍ତି ଏବଂ ଦେବୀ ଏଥିନା ଗ୍ରୀକ୍‌ମାନଙ୍କୁ ସାହାଯ୍ୟ କରୁଛନ୍ତି । ଟ୍ରୋଜାନମାନଙ୍କ ଭିତରେ ଦୁଇଭାଇ ଭଲଭାବରେ ଯୁଦ୍ଧ କରୁଥିଲେ । ଗୋଟିଏ ଭାଇ ଡାୟୋମେଡ଼ିସ୍‌କୁ ଲକ୍ଷ୍ୟକରି ବର୍ଚ୍ଛା ମାରିଲା; କିନ୍ତୁ ତାହା ଲକ୍ଷ୍ୟଭ୍ରଷ୍ଟ ହେଲା । ଏଥର ଡାୟୋମେଡ଼ିସ୍ ତାଙ୍କ ବର୍ଚ୍ଛାରେ ତାର ମୃତ୍ୟୁଘଟାଇଲେ ଏବଂ ଅନ୍ୟ ଭାଇଟି ରଥ ଛାଡ଼ି ପଳାଇଯିବାରେ ସେ ରଥଟିକୁ ଡାୟୋମେଡ଼ିସ୍ ଦଖଲ କଲେ ।

ଏ ଭିତରେ ଏଥିନା ମାର୍ସଙ୍କୁ ନଦୀ କୂଳକୁ ଡାକନେଇ କହିଲେ, "ସେମାନେ ଯୁଦ୍ଧକରନ୍ତୁ ।" ଆସନ୍ତୁ ଆମେ ଏଠାରେ ବିଶ୍ରାମ କରିବା । ଡାୟୋମେଡ଼ିସ୍ ସିଂହ ବିକ୍ରମରେ ଯୁଦ୍ଧକରିବାକୁ ଲାଗିଲେ । ଯୁଦ୍ଧ କରୁ କରୁ ଟ୍ରୋଜାନ ବାହିନୀର ଭିତରକୁ ପଶିଗଲେ । ହଠାତ୍ ଗୋଟିଏ ତୀର ଆସି ତାଙ୍କ କାନ୍ଧରେ ବିଦ୍ଧକରି ତାଙ୍କୁ ଆହତକଲା ।

ଆଗରେ ପାଣ୍ଡାରାସ ଠିଆ ହୋଇ କହିଲା—"ଏଥର ରକ୍ଷାନାହିଁ । କିଏ ରକ୍ଷାକରିବ ଦେଖିବ ।"

ଡାୟୋମେଡ଼ିସ୍ ତାଙ୍କର ସାରଥିକୁ, କହିଲେ ଯେଉଁ କାଣ୍ଡଟି ବିଦ୍ଧକରିଛି ସେଇଟିକୁ ଟାଣିନିଅ ।" ଟାଣିନେବାରେ ଖୁବ୍ ରକ୍ତ ବୋହିବାକୁ ଲାଗିଲା । ଡାୟୋମେଡ଼ିସ୍ ମନେ ମନେ ଏଥିନାକୁ ସ୍ମରଣକଲେ । ଏଥିନା ଦେବୀ ତାଙ୍କୁ ଅପୂର୍ବ ସାହସ ଦେଲେ ଏବଂ ଏଫ୍ରୋଡ଼ାଇଟିଙ୍କ ଦେହରେ ଆଘାତ ନ କରିବାକୁ ନିର୍ଦ୍ଦେଶ ଦେଲେ ।

ଏଥିନାଙ୍କ ପ୍ରେରଣାରେ ଡାୟୋମେଡ଼ିସ୍ ପ୍ରବଳ ବିକ୍ରମରେ ଯୁଦ୍ଧ ଆରମ୍ଭ କଲେ । ଆଘାତ ପ୍ରତି ଭ୍ରୂକ୍ଷେପ ନାହିଁ । ଗୋଟିଏ ପରେ ଗୋଟିଏ ଟ୍ରୋଜାନ ବୀର ମରି ଶୋଇଲେ ।

ସେଦିନ ଟ୍ରୋଜାନଦଳର ସେନାପତି ହୋଇଥିଲେ ଇଲସ୍ୱାସ । ଇଲସ୍ୱାସଙ୍କ ପିତା ମଣିଷ ଏବଂ ମାତା ସ୍ୱୟଂ ଦେବୀ ଏଫ୍ରୋଡ଼ାଇଟି । ଇଲସ୍ୱାସ ପାଣ୍ଡ୍ରାସକୁ କହିଲେ—ହେ ବୀର ତମର ଶରରେ ତ ଡାୟୋମେଡ୍ରିସର କୌଣସି କ୍ଷତି ହେଉନାହିଁ ।

ପାଣ୍ଡରସ କହିଲା—ଦେବତାମାନେ ଆଜି ମୋ ବିରୁଦ୍ଧରେ । ମୋର ମନେ ହେଉଛି ରଥରେ ଚଢ଼ି ନଥିବାରୁ ଏହା ଘଟୁଛି ।

—ବେଶ୍ ତମେ ମୋର ସାରଥି ହୁଅ, ମୁଁ ନିଜେ ଡାୟୋମେଡ଼ିସ୍ ସାଙ୍ଗରେ ଯୁଦ୍ଧ କରିବି ।

ପାଣ୍ଡ୍ରାସ କହିଲା ନୂଆଲୋକକୁ ଦେଖି ଘୋଡ଼ାମାନେ ଭୟ ପାଇବେ । ତା'ପରେ ଠିକ୍ ହେଲା ଯେ ଇଲସ୍ୱାସ ହେବେ ସାରଥି ଏବଂ ଯୁଦ୍ଧକରିବ ପାଣ୍ଡ୍ରାସ ।

ସାରଥି ଡାୟୋମେଡ୍ରିସକୁ ରଥକୁ ଉଠିବାକୁ କହିବାରେ ସେ କହିଲେ—"ମୁଁ ଆଜି ଏଥିନାଙ୍କ ବର ଲାଭକରିଛି । ଏ ଦୁଇଜଣଙ୍କୁ ମୁଁ ବର୍ତ୍ତିମାନ ମାରିଦେବି ।"

ପାଣ୍ଡ୍ରାସ ଡାୟୋମେଡ଼ିସ ଆଡ଼କୁ ବର୍ଚ୍ଛା ନିକ୍ଷେପ କଲେ । ବର୍ଚ୍ଛା ଚର୍ମଭେଦକଲା । ଡାୟୋମେଡ୍ରିସର ବର୍ଚ୍ଛା ପାଣ୍ଡ୍ରାସଙ୍କର ପ୍ରାଣହୀନ ଦେହକୁ ନେଇ ରଥରୁ ଗଡ଼ିପଡ଼ିଲା ।

ଇଲସ୍ୱାସ ଏ ଦୃଶ୍ୟ ସହ୍ୟ କରିପାରିଲା ନାହିଁ । ସେ ରଥରୁ ଓହ୍ଲାଇ ସାହସର ସହିତ ନିଜ ବନ୍ଧୁର ମୃତଦେହ ପାଖରେ ଜଗି ରହିଲେ । ଏହାଦେଖି ଡାୟୋମେଡ଼ିସ୍ ବର୍ଚ୍ଛା ପକାଇ ଗୋଟିଏ ବିରାଟ ପଥର ଇଲସ୍ୱାସର ଜଙ୍ଘକୁ ଲକ୍ଷ୍ୟକରି ମାରିଲେ । ଇଲସ୍ୱାସଙ୍କ ଜାନୁ ଭାଙ୍ଗିଗଲା । ସେ ପଡ଼ିଗଲେ । ହୁଏତ ତାଙ୍କର ସେଠାରେ ମୃତ୍ୟୁଘଟିଥାନ୍ତା; କିନ୍ତୁ ପୁଅର ବିପଦ ଦେଖି ଏଫ୍ରୋଡ଼ାଇଟି ଦୌଡ଼ିଆସିଲେ ଏବଂ ପୁଅକୁ ନିରାପଦ ଜାଗାକୁ

ନେଇଗଲେ । ଡ଼ାୟୋମେଡ଼ିସ୍ ରଥରେ ଚଢ଼ି ଦେବୀ ଏଫ୍ରୋଡ଼ାଇଟି ପଛରେ ଗୋଡ଼ାଇଲେ ଏବଂ ତାଙ୍କ ବର୍ଚ୍ଛାରେ ଆଘାତ କଲେ । ଦେବୀ ଏଫ୍ରୋଡ଼ାଇଟି ଭୀଷଣ ଯନ୍ତ୍ରଣାରେ ପୁଅକୁ ପକାଇଦେଇ ଅଲିମ୍ପସ ଆଡ଼କୁ ଧାଇଁଗଲେ । ଡାୟୋମେଡ଼ିସ୍ ଇନିୟାସଙ୍କୁ ହତ୍ୟା କରିବାପାଇଁ ତିନିଥର ଚେଷ୍ଟା କରିବାକୁ ଲାଗିଲେ କିନ୍ତୁ ପ୍ରତାରିତ ହେଲେ ।

ଏଣେ ଯୁଦ୍ଧ ପ୍ରବଳବେଗରେ ଚାଲିଛି । ଦେବତାମାନେ ଦୁଇଦଳରେ ଯୋଗ ଦେଇଛନ୍ତି । ହଠାତ୍ ଏଥିନା ଦେଖିଲେ ଯେ ଡାୟୋମେଡିସ୍ ଯୁଦ୍ଧକ୍ଷେତ୍ରର ଗୋଟିଏ ପାଖରେ ଠିଆହୋଇ କାନ୍ଧର ରକ୍ତ ପୋଛୁଛନ୍ତି । ସେ ଡ଼ାୟୋମେଡ଼ିସ୍‌ଙ୍କୁ ଉତ୍ତେଜିତ କରିବାକୁ ଲାଗିଲେ । ଡାୟୋମେଡ଼ିସ୍ କହିଲେ "ମୁଁ ଭୟ କରି ଏଠାକୁ ପଳାଇ ଆସିନି ଦେବୀ । ଅନେକ ଦେବତା ଯୁଦ୍ଧରେ ଯୋଗ ଦେଇଛନ୍ତି । ସ୍ୱୟଂ ଯୁଦ୍ଧଦେବତା ମାର୍ସ ଟ୍ରୋଜାନ ସୈନ୍ୟମାନଙ୍କୁ ପରିଚାଳନା କରୁଛନ୍ତି ।"

ଏଥିନା କହିଲେ –"ମାର୍ସ ମୋତେ ପ୍ରତିଶ୍ରୁତି ଦେଇଛନ୍ତି ଯେ ସେ ଆଜି ଗ୍ରୀକ୍ ପକ୍ଷରେ ଯୁଦ୍ଧକରିବେ; କିନ୍ତୁ ସେ ପ୍ରତିଜ୍ଞା ରଖିନାହାନ୍ତି । ତେଣୁ ତମର ଯୁଦ୍ଧ କରିବାରେ ବାଧାନାହିଁ । ତମେ ଆଗେଇ ଚାଲ ମୁଁ ହେବି ତମର ସାରଥି ।"

ସତକୁ ସତ ଦେବୀ ଏଥିନା ଡାୟୋମେଡ଼ିସଙ୍କର ସାରଥୀ ହୋଇ ରଥ ଚଳାଇଲେ । ମାର୍ସ ଦେବତା ପ୍ରଚଣ୍ଡ ଭାବରେ ଯୁଦ୍ଧ କରୁଥିଲେ । ଡାୟୋମେଡ଼ିସ୍‌ଙ୍କୁ ଆଗେଇ ଆସିବାର ଦେଖି ସେ ବର୍ଚ୍ଛା ନିକ୍ଷେପ କଲେ ଏବଂ ଏଥିନା ତାହା କୌଶଳରେ ଧରି ପକାଇଲେ । ଡାୟୋମେଡ଼ିସ୍‌ର ବର୍ଚ୍ଛା ପ୍ରଚଣ୍ଡ ବେଗରେ ଯାଇ ମାର୍ସଙ୍କର ଜାନୁ ଦେଶରେ ବିଦ୍ଧକଲା ।

ମାର୍ସ ଆହତହୋଇ ରାଗ ଓ ଯନ୍ତ୍ରଣାରେ ଗର୍ଜନ କରୁ କରୁ ଅଲିମ୍ପାସ ପର୍ବତକୁ ଯାଇ ପିତା ଦେବରାଜ ଜିଉସଙ୍କ ପାଖରେ ଫେରିଆଦ କଲେ ।

ଲଉସ୍ ବିରକ୍ତ ହୋଇ କହିଲେ—"ମୋତେ ଆଉ ବିରକ୍ତ କରନା । ତମ ମା' ଘରକୁ ପାଖକୁ ଯାଅ ।"

ଏଣେ ଟ୍ରୟର ପ୍ରାଚୀର ପାଖରେ ପ୍ରବଳ ବେଗରେ ଯୁଦ୍ଧ ଚାଲିଥାଏ ।

## ଛଅ

ହେକ୍‌ଟର ଯୁଦ୍ଧ କ୍ଷେତ୍ରରୁ ଫେରିଗଲେ ।

ପ୍ରଧାନ ଫାଟକ ପାଖରେ ନଗରର ନରନାରୀମାନେ ଯୁଦ୍ଧ ଖବର ଶୁଣିବା ପାଇଁ ଉଦ୍‌ଗ୍ରୀବ ହୋଇ ଉଠିଥିଲେ । କାହାର ବାପ, କାହାର ଭାଇ, ଆଉ କାହାର ସ୍ୱାମୀ ଯୁଦ୍ଧକୁ ଯାଇଛନ୍ତି । ସେମାନେ ହେକ୍‌ଟରଙ୍କୁ ଦେଖି ଫେରିଗଲେ ।

ସେମାନଙ୍କୁ ପ୍ରବୋଧ ଦେଇ ହେକ୍‌ଟର ରାଜା ପ୍ରାୟାମଙ୍କ ପ୍ରାସାଦକୁ ଗଲେ । ହେକ୍‌ଟରଙ୍କ ମାତା ହେକ୍‌ଭବ ପୁଅକୁ ଅସମୟରେ ଫେରି ଆସିବା ଦେଖି କହିଲେ—"ପୁଅ ତୁ ବଡ଼ କ୍ଳାନ୍ତ; କ'ଣ ଖାଇବାକୁ ଆଣିଦେବି ?"

ହେକ୍‌ଟର କହିଲେ—"ନା ମା' ଦରକାର ନାହିଁ, ତମେ ଏଥିନୀ ଦେବୀ ମନ୍ଦିରକୁ ଯାଇ ଭଲକରି ପୂଜା ଦିଅ । ସେ ଯେପରି ଆମ ଉପରେ ସଦୟ ହୁଅନ୍ତି । ମୁଁ ପେରିସ୍ ପାଖକୁ ଯାଉଛି ।"

ହେକ୍‌ଟର ଯାଇ ଦେଖିଲେ ଯେ—ପେରିସ୍ ବର୍ମ ଓ ଅସ୍ତ୍ରଶସ୍ତ୍ର ସବୁ ଖୋଲି ଦେଇ ହେଲେନ୍‌ଙ୍କ ପାଖରେ ବସିଛନ୍ତି । ସେ ପେରିସ୍‌କୁ କଠୋର ଭାବରେ ତିରସ୍କାର କରି କହିଲେ—"ତମରି ପାଇଁ ଟ୍ରୟ ଆଜି ବିପନ୍ନ । ହଜାର ହଜାର ଟ୍ରୋଜାନ ଯୁଦ୍ଧରେ ପ୍ରାଣ ଦେଇଛନ୍ତି; ଅଥଚ ତମେ ଏଠାରେ ଚୁପ୍ କରି ବସିଛ, ଲାଜ ଲାଗୁନି ତମକୁ ?"

ପେରସ୍ ଅତ୍ୟନ୍ତ ଲଜ୍ଜିତ ହୋଇ କହିଲେ—"ମୋର ଅନ୍ୟାୟ ବୁଝିପାରୁଛି । ହେଲେନ ମଧ୍ୟ ମୋତେ ସେ କଥା କହୁଥିଲା । ମୁଁ ବର୍ତ୍ତମାନ ଯୁଦ୍ଧ କରିବାକୁ ଯାଉଛି ।"

ହେଲେନ ହେକ୍‌ଟରଙ୍କୁ ବିଶ୍ରାମ ନେବାକୁ କହିଲେ । ହେକ୍‌ଟର କହିଲେ—"ନା, ଯେତେବେଳେ ସଙ୍ଗୀମାନେ ଯୁଦ୍ଧକ୍ଷେତ୍ରରେ, ସେତେବେଳେ ମୋ ପକ୍ଷରେ ବିଶ୍ରାମ ଶୋଭାପାଏନା । ମୁଁ ମୋର ସ୍ତ୍ରୀ ପୁତ୍ର ପାଖକୁ ବିଦାୟ ନେବାକୁ ଆସିଛି । ଆଉ ହୁଏତ ଜୀବନରେ ଦେଖା ହେବନାହିଁ ।"

ତାଙ୍କ ଘରେ ତାଙ୍କ ସ୍ତ୍ରୀ ଏନ୍‌ଡ୍ରୋମାଙ୍କଙ୍କୁ ଦେଖାପାଇଲେ ନାହିଁ । ଶୁଣିଲେ ଯେ ସେ ଯୁଦ୍ଧ ଖବର ଜାଣିବାକୁ ନଗରର ପ୍ରାଚୀର ପାଖକୁ ଯାଇଛନ୍ତି । ତାଙ୍କ ସାଙ୍ଗରେ ଧାଈ ମା' ତାଙ୍କର ଶିଶୁପୁତ୍ରକୁ ନେଇ ସାଙ୍ଗରେ ଯାଇଛି । ହେକ୍‌ଟର ପୁଣି ଫେରି ଆସିଲେ ।

ହେକ୍‌ଟରଙ୍କୁ ଦେଖି ତାଙ୍କ ସ୍ତ୍ରୀ ଏନ୍‌ଡ୍ରୋମାଙ୍କ ଧାଇଁ ଆସିଲେ । ହେକ୍‌ଟର ସ୍ନେହରେ ଶିଶୁପୁତ୍ର ଆଡ଼କୁ ଅନାଇଲେ । ଟ୍ରୟ ଲୋକମାନେ ଏହି ଶିଶୁର ନାମକରଣ କରିଥିଲେ ଆଷ୍ଟାୟାନାସ୍ ଅର୍ଥାତ ନଗରରାଜ । ଶିଶୁର ପିତା ଟ୍ରୟ ନଗରକୁ ଶତ୍ରୁ ହାତରୁ ରକ୍ଷା କରିଥିଲେ ବୋଲି ଏହି ନାମକରଣ ହୋଇଥିଲା ।

ହେକ୍‌ଟରଙ୍କ ସ୍ତ୍ରୀ କହିଲେ—"ତମକୁ ଆଉ ଯୁଦ୍ଧକୁ ଯିବାକୁ ଦେବନାହିଁ । ମୋର ବାପ ମା' ନାହାନ୍ତି । ମୋର ସାତୋଟି ଭାଇ ଗୋଟିଏ ଦିନ ଭିତରେ ଯୁଦ୍ଧରେ ମରିଛନ୍ତି । ତମେ ଏକାକୀ ଅଛ । ତମକୁ ହରାଇଲେ ମୁଁ ବଞ୍ଚିରହିବି କିପରି ?"

ହେକ୍‌ଟର ପ୍ରବୋଧ ଦେଇ କହିଲେ ଯେ ତାଙ୍କୁ ଯୁଦ୍ଧକୁ ଯିବାକୁ ପଡ଼ିବ; କାରଣ ଯୁଦ୍ଧ ଉପରେ ଦେଶର ସ୍ୱାଧୀନତା, ଜାତିର ସମ୍ମାନ ନିର୍ଭର କରୁଛି । ହେକ୍‌ଟର ବିଦାୟ ନେଲେ । ଶିଶୁକୁ କୋଳରେ ଧରି ମୁଖ-

ଚୁମ୍ବନ କରି କହିଲେ ଜିଉସଙ୍କ ଉଦ୍ଦେଶ୍ୟରେ ବଡ଼ହୁଅ, ମୋଠାରୁ ଅନେକ ବଡ଼ ବୀର ହୁଅ ।

ସ୍ତ୍ରୀ ଠାରୁ ବିଦାୟ ନେଇ ଧୀର ପଦରେ ଯୁଦ୍ଧକ୍ଷେତ୍ର ଆଡ଼କୁ ସେ ଆଗେଇ ଗଲେ । ଅନିମେଷ ନୟନରେ ପତିପ୍ରାଣା ଆନଡ୍ରୋମାଙ୍କ ଦୃଷ୍ଟି ଏଡ଼ାଇବା ପର୍ଯ୍ୟନ୍ତ ତାଙ୍କ ଗମନପଥ ଆଡ଼କୁ ଅଶ୍ରୁପୂର୍ଣ୍ଣ ନୟନରେ ଅନାଇ ରହିଲେ ।

ହେକ୍‌ଟର ଟିକିଏ ଆଗେଇଯାଇ ପେରିସ୍‌ଙ୍କୁ ଦେଖିଲେ । ପେରିସ ମଧ୍ୟ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ଯୁଦ୍ଧକୁ ଯାଉଥାନ୍ତି ।

ପେରିସ୍ କହିଲେ –"କ'ଣ ମୋର ଡେରି ହୋଇଗଲା କି ?"

ହେକ୍‌ଟର କହିଲେ—"ନା ଭାଇ ତମର ସାହସ ସମ୍ପର୍କରେ ମୋର ସନ୍ଦେହ ନାହିଁ । ତେବେ ଯୁଦ୍ଧକ୍ଷେତ୍ରରୁ ପଳାଇ ଆସିବାଟା ତମ ପକ୍ଷରେ ଉଚିତ ହୋଇନାହିଁ । ଥାଉ ସେ କଥା, ଚାଲ ଗ୍ରୀକ୍‌ମାନଙ୍କୁ ଶିକ୍ଷାଦେବା ।"

## ସାତ

ସେଦିନ ଯୁଦ୍ଧରେ ହେକ୍‌ଟର ଏବଂ ପେରିସ୍ ହାତରେ ଅସଂଖ୍ୟ ଗ୍ରୀକ୍ ସୈନ୍ୟ ପ୍ରାଣ ହରାଇଲେ । ଦୁଇ ଭାଇଙ୍କ ସମ୍ମୁଖରେ କେହି ଠିଆ ହେବାକୁ ସାହସ କଲେନାହିଁ ।

ଦେବୀ ଏଥେନା ଏହାଦେଖି ବିଚଳିତା ହୋଇ ପଡ଼ିଲେ । ଏ ଦୁଇ ଭାଇଙ୍କୁ ବିଶେଷତଃ ହେକ୍‌ଟର ବନ୍ଦୀ ନହେଲେ ଗ୍ରୀକ୍ ସୈନ୍ୟ ଧ୍ୱଂସ ହୋଇଯିବେ । ଏଥେନା ଏପଲୋଙ୍କ ସହିତ ପରାମର୍ଶ କଲେ । ଦେବତାଙ୍କର ଚକ୍ରାନ୍ତ ସଫଳ ହେଲା ।

ହେକ୍‌ଟର ଏଗାମେମ୍‌ନନଙ୍କ ନିକଟରେ ପ୍ରସ୍ତାବ କଲେଯେ ଏଥର ଯୁଦ୍ଧ ବନ୍ଦକରି ଦ୍ୱନ୍ଦ୍ୱ ଯୁଦ୍ଧ ଆୟୋଜନ କର। ଗ୍ରୀକ୍‌ମାନଙ୍କ ଭିତରୁ ଯେ କୌଣସି ବୀର ସହିତ ହେକ୍‌ଟର ଲଢ଼ିବାକୁ ପ୍ରସ୍ତୁତ ଅଛନ୍ତି।

ହେକ୍‌ଟରଙ୍କର ଏ ପ୍ରସ୍ତାବକୁ ଗ୍ରୀକ୍‌ସମ୍ରାଟ ରାଜି ହେଲେ; କିନ୍ତୁ ହେକ୍‌ଟରଙ୍କ ବିରୁଦ୍ଧରେ ଲଢ଼ିବାକୁ କେହି ବାହାରିଲେ ନାହିଁ।

ମେନେଲସ ଉଠି କହିଲେ—"ଛି, ଛି, ଗ୍ରୀକ୍‌ମାନେ କଣ କାପୁରୁଷ। ମୁଁ ହେକ୍‌ଟର ବିରୁଦ୍ଧରେ ଲଢ଼ିବି। ଗ୍ରୀକ୍ ସମ୍ରାଟ ଏଗମେମ୍‌ନନ୍ ତମେ ଯାଅନା। ତା' ସାଙ୍ଗରେ ଯୁଦ୍ଧ କରିବାକୁ ଆକିଲସ୍ ଭୟ କରନ୍ତି । ମେନେଲସ୍‌ଙ୍କୁ ଦେଖି ଆହୁରି ନଅଜଣ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ। ଶେଷରେ କିଏ ହେକ୍‌ଟରଙ୍କ ସହିତ ଲଢ଼ିବ ଏଥିପାଇଁ ଭାଗ୍ୟ-ଗୁଳା ପକାଗଲା। ଏହି ଧର୍ମ ଗୁଳାରେ ଆଜାକସର ନାମ ଉଠିଲା।

ଆଜାକ୍‌ସ ସମସ୍ତଙ୍କ ମଧ୍ୟରୁ ବଳିଷ୍ଠ। ଅସୁରପରି ଚେହେରା। ହାତରେ ଢାଲ ଓ ବିରାଟ ବର୍ଚ୍ଛା ନେଇ ଆଗେଇ ଆସିଲେ ଏବଂ କହିଲେ-"ହେକ୍‌ଟର ତମେ ଭାବୁଛ ଯେ ଆକିଲସ୍ ଛଡ଼ା ତମ ସାଙ୍ଗରେ ଯୁଝିବାକୁ କେହିନାହିଁ। ଜାଣିରଖ ମୋ ନାମ ଆଜାକ୍‌ସ।"

ଯୁଦ୍ଧ ଆରମ୍ଭ ହେଲା। ହେକ୍‌ଟର ବର୍ଚ୍ଛା ମାରିଲେ। ବର୍ଚ୍ଛାଟି ସପ୍ତମ ପର୍ଦ୍ଦାକୁ ଯାଇ ଅଟକିଲା। ଆଜକ୍‌ସ ବଞ୍ଚିଗଲେ। ଆଜକ୍‌ସର ବର୍ଚ୍ଛା ହେକ୍‌ଟରର ଢାଲ ଭାଙ୍ଗି ତାଙ୍କ ଜଙ୍ଘରେ ଆଘାତକଲା କିନ୍ତୁ ମୃତ୍ୟୁ ମୁଖରୁ ସେ ରକ୍ଷାପାଇଲେ।

ପୁଣି ହେକ୍‌ଟରଙ୍କ ବର୍ଚ୍ଛା! ଆଜକ୍‌ସର ଢାଲ ଭେଦ କରି ପାରିଲା ନାହିଁ! ଆଜକ୍‌ସର ବର୍ଚ୍ଛା କିନ୍ତୁ ଢାଲ ଭେଦକରି କାନ୍ଧରେ ଗଭୀର କ୍ଷତ ସୃଷ୍ଟିକଲା। ଏଥର ହେକ୍‌ଟର ଗୋଟାଏ ବଡ଼ ପଥର ଫିଙ୍ଗିଲେ। ଆଜକ୍‌ସ କିନ୍ତୁ ସେଇଟିକୁ ଢାଲରେ ଅଟକାଇ ଦେଲା। ଆଜକ୍‌ସର ପଥର ମାଡ଼ରେ ହେକ୍‌ଟରଙ୍କ ଢାଲଟି ଚୂରମାର ହୋଇଗଲା ଏବଂ ସେ ମାଟିରେ ପଡ଼ିଗଲେ।

ଏହାପରେ କଣ ଯେ ଅବସ୍ଥା ହୋଇଥାନ୍ତା କହିବା କଠିନ ହୁଅନ୍ତା । କିନ୍ତୁ ଏପଲୋ ଦେବଆସି ଅଲକ୍ଷ୍ୟରେ ହେକ୍‌ଟରଙ୍କୁ ଟାଣି ଉଠାଇଦେଲେ । ହେକ୍‌ଟର ଏ ମହାଯାତନାରୁ ବଞ୍ଚିଗଲେ ।

ଦୂତ ବୁଗୁଲ୍ ବଜାଇ ଘୋଷଣା କଲା ଯେ, ପ୍ରଭୁ ଜିଉସ୍‌ଙ୍କ ଆଦେଶରେ ଯୁଦ୍ଧ ବନ୍ଦହେଲା । ସନ୍ଧ୍ୟା ଉପସ୍ଥିତ ପ୍ରାୟ । ସେତେବେଳକୁ ଦିନବେଳେ କେବଳ ଯୁଦ୍ଧ ହେବାର ନିୟମଥିଲା । ରାତିରେ କେହି କାହାକୁ ଅସ୍ତ୍ରାଘାତ କରୁ ନ ଥିଲେ ।

ଆଜାକ୍‌ସ କହିଲେ, "ହେକ୍‌ଟର ଯାହା ଇଚ୍ଛା କହିବେ ସେଇଆ ହେବ କାରଣ ସେ ମୋତେ ଯୁଦ୍ଧକୁ ଆହ୍ୱାନ କରିଥିଲେ ।

ହେକ୍‌ଟର କହିଲେ—"ଭଗବାନ ଆପଣଙ୍କୁ ଯେପରି ବିରାଟ ଦେହ ଦେଇଛନ୍ତି ସେହିପରି ବିରାଟ ଶକ୍ତି ମଧ୍ୟଦେଇଛନ୍ତି । ଗ୍ରୀକ୍ ସୈନ୍ୟ ଭିତରେ ଆପଣଙ୍କଠାରୁ ବଡ଼ ଯୋଦ୍ଧା ମୁଁ ଏହା ପୂର୍ବରୁ ଦେଖିନାହିଁ । ସନ୍ଧ୍ୟା ଆଗତ ପ୍ରାୟ, ତେଣୁ ଯୁଦ୍ଧ ବନ୍ଦ କରିବାକୁ ପଡ଼ିବ । ସକାଳେ ଆମେ ଯଥା ସମୟରେ ଯୁଦ୍ଧରେ ମିଳିତ ହେବା । ଶତ୍ରୁଭାବରେ ଆମେ ଯୁଦ୍ଧ ଆରମ୍ଭ କରୁଥିଲୁ କିନ୍ତୁ ବନ୍ଧୁଭାବରେ ବିଦାୟ ନେବା ।"

ହେକ୍‌ଟର ବୀର ପରି ହସି ହସି ମୁହଁରେ ତାଙ୍କର ରୌପ୍ୟଖଚିତ ତରବାରି ଖୋଲି ଆଜାକ୍‌ସଙ୍କୁ ଉପହାର ଦେଲେ । ଆଜାକ୍‌ସ ମଧ୍ୟ ତାଙ୍କର ମୂଲ୍ୟବାନ କମର ପଟି ଖୋଲି ହେକ୍‌ଟରଙ୍କୁ ପିନ୍ଧାଇ ଦେଲେ ।

ଗ୍ରୀକ୍ ଏବଂ ଟ୍ରୋଜାନ ସୈନ୍ୟ ଭିତରୁ ଶୁଭିଲା ଆନନ୍ଦଧ୍ୱନି ।

## ଆଠ

ସେଦିନ ରାତିରେ ଆଜାକ୍‌ସଙ୍କର ସମ୍ମାନାର୍ଥେ ଗୋଟିଏ ବଡ଼ ଭୋଜିର ଆୟୋଜନ ହେଲା । ଖିଆ ପିଆ ପରେ ପ୍ରବୀଣ ଯୋଦ୍ଧା ନେଷ୍ଟର କହିଲେ—

" ଆଜିର ଯୁଦ୍ଧରେ ଆମର ଅନେକ ସୈନ୍ୟ ମରିଛନ୍ତି । ଟ୍ରୋଜାନ ମାନଙ୍କର ମଧ୍ୟ ବହୁସୈନ୍ୟ ମୃତ । ଆସନ୍ତା କାଲି ଯୁଦ୍ଧ ବନ୍ଦକରି ମୃତ ସୈନ୍ୟ ଗୁଡ଼ିକର ଶବ ସତ୍କାର କରିବା ଉଚିତ" ।

ଏଣେ ଟ୍ରୋଜାନମାନଙ୍କ ଭିତରେ ପ୍ରବଳ ତର୍କ ଆରମ୍ଭ ହୋଇଛି । ଦଳେ କହୁଛନ୍ତି ଯେ ଆମେ ପ୍ରତିଜ୍ଞା ରକ୍ଷା କରିନୁ ତେଣୁ ଏ ଯୁଦ୍ଧରେ ଆମେ ଜୟୀ ହୋଇ ପାରିବା ନାହିଁ । ଧନରତ୍ନ ଦେଇ ହେଲେନକୁ ଫେରାଇ ଦିଆଯାଉ ।

ପେରିସ୍ କହିଲେ—"ନା ତାହା ହୋଇ ପାରିବ ନାହିଁ । ହେଲେନ ମୋର ସ୍ତ୍ରୀ । ମୁଁ ତାକୁ ବିବାହ କରିଛି । ତାକୁ କୌଣସି ପ୍ରକାର ଫେରାଇ ଦିଆଯାଇ ପାରେନା । ଅବଶ୍ୟ ଧନରତ୍ନ ଦେଲେ ମୋର ମନା କରିବାର କିଛି ନାହିଁ ।"

ପେରିସ୍ କଥାନୁଯାଇ ଏ ପ୍ରସ୍ତାବ ନେଇ ଜଣେ ଦୂତ ଗ୍ରୀକ୍ ସମ୍ରାଟଙ୍କ ପାଖକୁ ଗଲା ।

ଏ ପ୍ରସ୍ତାବରେ ଡ଼ାୟୋମେଡ଼ିସ୍ କହିଲେ—"ଯାଅ ଦୂତ ! ତୁମର ରାଜାଙ୍କୁ ଜଣାଅ ଯେ ଆମେ ଧନରତ୍ନ ଗ୍ରହଣ କରୁନା । ହେଲେନକୁ ଫେରାଇ ଦେବା ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ଟ୍ରୟର ଶେଷଦିନ ଆସିଗଲାଣି ।"

ଦୂତକୁ ଏଗାମେମ୍ନନ୍ କହିଲେ—"ଆମର ଉତ୍ତର ତ ନିଜ କାନରେ ଶୁଣିଲେ । ତୁମର ରାଜାଙ୍କୁ କୁହ, ମୃତଦେହ ସତ୍କାର ପାଇଁ ଆମେ ଆଜି ଦିନଟି ଯୁଦ୍ଧ ସ୍ଥଗିତ ରଖିବା ପାଇଁ ରାଜିଅଛୁ ।"

ଟ୍ରୋଜାନମାନେ ଯୁଦ୍ଧକ୍ଷେତ୍ରରୁ ସେମାନଙ୍କର ନିହତ ସଙ୍ଗୀମାନଙ୍କର ମୃତଦେହ ଖୋଜି ବାହାର କରି ନଗରର ଶ୍ମଶାନକୁ ନେଇଗଲେ । ଗ୍ରୀକ୍-ମାନେ ସମୁଦ୍ର କୂଳରେ ବଡ଼ ବଡ଼ ଚିତା ଜଳାଇ ସେମାନଙ୍କର ମୃତ

ବନ୍ଧୁମାନଙ୍କର ଶବ ସତ୍କାରକଲେ । ଗୋଟିଏ ପଣଖା ଖୋଳ ତା’ପାଖରେ ମାଟିରେ ଗୋଟିଏ ସୁଦୃଢ଼ କାନ୍ଥକଲେ । ରାତ୍ରି ହେବାରେ ଦୁଇଦଳ ଯୋଦ୍ଧା ଶିବରରେ ପାନ ଭୋଜନରେ ମତ୍ତ ରହିଲେ ।

ଅଲମ୍ପାସ ପର୍ବତରେ ଦେବରାଜ ଜିଉସ୍ ସମସ୍ତ ଦେବ ଦେବୀଙ୍କୁ ଡ଼ାକ ପଠାଇ କହିଲେ ଯେ ସେମାନେ ଯେପରି କୌଣସି ଦଳର ଯୁଦ୍ଧରେ ଯୋଗ ନ ଦିଅନ୍ତି । ସେମାନେ ଯଦି ଯୋଗଦେବେ କଠିନ ଶାସ୍ତି ପାଇବେ ।

ତା’ପରେ ଜିଉସ୍ ସୁନାର ବର୍ମ ପିନ୍ଧ ସୁନା ଚାବୁକ ଧର ରଥରେ ଚଢ଼ିଲେ । ସୁନାର ପୁଚ୍ଛ ତୋଳ ଘୋଡ଼ା ଗୁଡ଼ିକ ମହାଶୂନ୍ୟରେ ଯିବାକୁ ଲାଗିଲେ । ତଳେ ପୃଥିବୀ, ଉପରେ ନକ୍ଷେତ୍ର ଖଚିତ ମହାକାଶ । ମଝିରେ ଦେବରାଜଙ୍କର ରଥ । ସେ ରଥ ଅଟକିଲା ଯାଇ ଆଇଡ଼ା ପର୍ବତ ଚୂଡ଼ାରେ । ସେଠାରେ ସେ ଘନ କୁହୁଡ଼ି ସୃଷ୍ଟି କର ଗ୍ରୀକ୍ ଏବଂ ଟ୍ରୋଜାନମାନଙ୍କୁ ଦେଖିବାକୁ ଲାଗିଲେ ।

କ୍ରମେ ପୃଥିବୀରେ ପ୍ରକାଶିତ ହେଲା ଭୋର ସୂର୍ଯ୍ୟର ଆଲୋକ । ଗ୍ରୀକ୍ ଏବଂ ଟ୍ରୋଜାନ ସୈନ୍ୟ ମାନଙ୍କର ରଣହୁଙ୍କାରରେ ଆକାଶ ପବନ ମୁଖରିତ ହୋଇ ଉଠିଲା । ଶୁଭିଲା ଅସ୍ତ୍ରଶସ୍ତ୍ରର ଝଙ୍କାର । ଦେଖୁ ଦେଖୁ ରକ୍ତ ସ୍ରୋତ ଛୁଟିଲା ।

ଦ୍ୱିପହର ହେଲା । ଦେବରାଜ ଜିଉସ୍ ଆଇଡ଼ା ପର୍ବତରୁ ଏ ଯୁଦ୍ଧ ଦେଖୁଛନ୍ତି । ସେ ଗୋଟିଏ ମାପ ଦଣ୍ଡ-ନିକିତ ନେଇ ଗୋଟିଏ ଦିଗରେ ଗ୍ରୀକ୍ ଏବଂ ଆନ୍ୟଦିଗରେ ଟ୍ରୋଜାନମାନଙ୍କର ମୃତ୍ୟୁର ପରିମାଣ ଓଜନ କଲେ । ଦେଖିଲେ ଯେ ଗ୍ରୀକ୍ ମାନଙ୍କର ତଳକୁ ଝୁଲି ପଡ଼ୁଛି । ଜିଉସ୍ ଘନ ଘନ ବଜ୍ରାଘାତ କର ସେହି ଆଲୋକରେ ନିକିତକୁ ଦେଖାଇବାକୁ ଲାଗିଲେ । ଏହା ଦେଖି ଗ୍ରୀକ୍ ବାହିନୀ ଭିତରେ ଆତଙ୍କ ଖେଳଗଲା ।

ବଡ଼ ବଡ଼ ଗ୍ରୀକ୍ ଯୋଦ୍ଧାମାନେ ପ୍ରଭୁ ଜିଉସ୍‌ଙ୍କର ଏ ଇଙ୍ଗିତରେ ଡରିଗଲେ । ଶତ୍ରୁକୁ ସମ୍ମୁଖିନ ହେବାକୁ କେହି ସାହସ କଲେ ନାହିଁ । ବୃଦ୍ଧ

ନେଷ୍ଟର କିନ୍ତୁ ଅବିଚଳିତ ଥିଲେ । ସେ ରଥରୁ ଡେ଼ଇଁ ଚଳେ ଯୁଦ୍ଧ କରୁଥିଲା ବେଳେ ଦେଖିଲେ ଯେ ହେକ୍‌ଟର ଆଗେଇ ଆସୁଛି ।

ଡାୟୋମେଡ଼ିସ୍‌ ଏକଥା ଅଡ଼ିସିଉସଙ୍କୁ ଜଣାଇ ଦେଲେ । କିନ୍ତୁ ଅଡ଼ିସିଉସ୍‌ ତାହା ଶୁଣି ପାରିନଥିଲେ ।

ଡ଼ାୟୋମେଡ଼ିସ୍‌ ନେଷ୍ଟର ପାଖରେ ଠିଆ ହୋଇ କହିଲା—"ଆପଣ ବୁଢ଼ା ଲୋକ, ମୋର ସାରଥି ହୁଅନ୍ତୁ । ମୋର ଘୋଡ଼ା ଗୁଡ଼ିକ ଇନିସ୍ଥାସର ସେହି ବିଖ୍ୟାତ ଯମଜଘୋଡ଼ା । ଆସନ୍ତୁ, ହେକ୍‌ଟରକୁ ଆକ୍ରମଣ କରିବା ।"

ନେଷ୍ଟର ସାରଥିହେଲେ । ଡାୟୋମେଡ଼ିସ ହେକ୍‌ଟରକୁ ମାରିଲା ବର୍ଚ୍ଛା । ଗୋଟିଏ ବର୍ଚ୍ଛା ହେକ୍‌ଟରର ସାରଥି ବୁକୁ ଉପରେ ବାଜିଲା । ସାରଥି ମରି ଶୋଇଲା । ଠିକ୍‌ ଏତିକିବେଳେ ଜିଉସ୍‌ ଡ଼ାୟୋମେଡ଼ିସ୍‌ ରଥ ଆଗରେ ଗୋଟିଏ ବଜ୍ରାଘାତ କଲେ । ଜିଉସ୍‌ଙ୍କର ଧେଟିସ୍‌ କଥା ମନେଅଛି ।

ନେଷ୍ଟର ଘୋଡ଼ାର ମୁହଁ ଫେରାଇ ଦେଇ କହିଲେ—"ଦେବରାଜ ଜିଉସ ସ୍ୱୟଂ ଆମ ବିପକ୍ଷରେ । ବର୍ତ୍ତମାନ ଲଢ଼େଇ କରିବାରେ ଲାଭ ନାହିଁ । ଚାଲ ଆମେ ଶୀଘ୍ର ଫେରି ଯିବା ।

ଡାୟୋମେଡ଼ିସର ରଥ ପଛକୁ ହଟିବାରେ ଶର ବର୍ଚ୍ଛା ପଡ଼ିଲା; ଏବଂ ଗମ୍ଭୀର ବିଦ୍ରୂପ ବାଣୀ ଶୁଣାଗଲା । ଦେଖୁ ଦେଖୁ ଗ୍ରୀକ୍‌ ବୀର ସବୁ ପ୍ରାଣ-ବିକଳରେ ଦୌଡ଼ି ପଳାଇବାରେ ଲାଗିଛନ୍ତି ।

ଡାୟୋମେଡ଼ିସ ଯେତେ ଥର ମନ ଦୃଢ଼ କରି ଠିଆ ହେଉ ଥାଆନ୍ତି । ପୁଣି ବଜ୍ରପାତ ହେଉଥାଏ । ସେତେଥର ବିଦ୍ରୂପ ତିରସ୍କାର ତାଙ୍କୁ ହଜମ କରିବାକୁ ପଡ଼ୁଥାଏ ।

ଗ୍ରୀକ୍‌ ସୈନ୍ୟମାନେ ଛତ୍ରଭଙ୍ଗ ଦେଲେ । ହେକ୍‌ଟରଙ୍କ ଆଗକୁ ଆସିବାକୁ ସମସ୍ତେ ଭୟ କଲେ । ଗ୍ରୀକ୍‌ ମାନଙ୍କୁ ହେକ୍‌ଟର ଜାହାଜ ପାଖକୁ

ନେଇ ନିଆଁ ଲଗାଇଦେଲେ । ଏହାଦେଖି ଦେବୀ ହିରା ଏଗାମେନନଙ୍କୁ ଗ୍ରୀକ୍ ସୈନ୍ୟଙ୍କୁ ସାହସ ଦେବାକୁ କହିଲେ । ସାହସ ପାଇ ଗ୍ରୀକ୍ ମାନେ ଠିଆ ହେଲେ ।

ଗ୍ରୀକ୍ମାନଙ୍କ ଭିତରୁ ଶ୍ରେଷ୍ଠ ତୀରନ୍ଦାଜ ଟିଉସାର ଆଜାକସଙ୍କର ଢାଲର ଆଢ଼ୁଆଳରୁ ଗୋଟିଏ ପରେ ଗୋଟିଏ ଶରମାରି ଟ୍ରୋଜାନ ଯୋଦ୍ଧା ମାନଙ୍କୁ ଧରାଶାୟୀ କରିବାକୁ ଲାଗିଲେ । ହେକ୍ଟର ଏହାଦେଖି ଗୋଟାଏ ବଡ଼ ପଥର ଉଠାଇ ତା'ଉପରେ କଚାଡ଼ି ଦେଲେ । ପଥରଟି ଟିଉସାରଙ୍କୁ ଧରାଶାୟୀ କରିଦେଲା ।

ଟିଉସାରର ଏ ଅବସ୍ଥା ଦେଖି ଦେବୀ ଏଥିନା ଓ ହିରା ବ୍ୟଥିତ ହେଲେ । ସେମାନେ ଗ୍ରୀକ୍ମାନଙ୍କୁ ସାହାଯ୍ୟ କରିବାକୁ ଆସିଲା ବେଳେ ଦେବରାଜ ଜିଉସ୍ ସାବଧାନ କରି କହିଲେ ଯେ ତାଙ୍କର ଆଦେଶ ଯେପରି କେହି ଅମାନ୍ୟ କରିବେନାହିଁ । ଆକିଲିସ ଫେରି ନଆସିବା ପର୍ଯ୍ୟନ୍ତ ସେ ହେକ୍ଟରକୁ ଅଜୟ କରି ରଖିବେ ।

ରାତି ହେଲା । ସେ ଦିନର ଯୁଦ୍ଧ ଶେଷହେଲା । ହେକ୍ଟର କହିଲେ— "ଆଉ ଟିକଏ ସମୟ ପାଇଥିଲେ ମୁଁ ଗ୍ରୀକ୍ ଜାହାଜ ଗୁଡ଼ିକୁ ଧ୍ୱଂସ କରି ଦେଇଥାନ୍ତି । ଯା'ହେଉ ଆଗାମୀ କାଲି ଗ୍ରୀକ୍ ମାନେ ରକ୍ଷା ପାଇବେନାହିଁ ।' ଠିକ୍ ହେଲାଯେ ରାତିରେ ଟ୍ରୋଜାନ ସୈନ୍ୟ ମାନେ ଯୁଦ୍ଧ କ୍ଷେତ୍ର ଛାଡ଼ି ନିଜ ନଗର ଭିତରକୁ ପଶିବେ ନାହିଁ । ଜାନ୍‌ଥାଏ ନଦୀ ଧାରରେ ବିରାଟ ପଡ଼ିଆ ଭିତରେ ହଜାର ହଜାର ଅଗ୍ନି କୁଣ୍ଡ ଜାଳି ଭୋରକୁ ପ୍ରତୀକ୍ଷା କରିବାକୁ ଲାଗିଲେ । ଖିଆ ପିଆ ସେଠାରେ ସାରି ଦେଇ ଗ୍ରୀକ୍ ମାନେ ଯେପରି ଜାହାଜରେ ପଳାଇ ନଯିବେ ସେଥିପାଇଁ କଡ଼ା ପହରା ଦେଲେ । ଏଣେ ନଗର ଭିତରେ ପିଲା ବୁଢ଼ାମାନେ ଜାଗ୍ରତରହିଲେ । ସ୍ତ୍ରୀମାନେ ଘର ଘର ମାନଙ୍କରେ ନିଆଁ ଜାଳି ବସି ରହିଲେ ଗୁପ୍ତଚର ସନ୍ଧାନରେ ।

# ନଅ

ବିଜୟୀ ଗର୍ବରେ ଟ୍ରୋଜାନମାନେ ଯେତେବେଳେ ଅପେକ୍ଷା କରୁଥିଲେ ସେତେବେଳେ ଗ୍ରୀକ୍‌ମାନଙ୍କ ଭିତରେ ଫୁଟି ଉଠୁଥିଲା ଆତଙ୍କ, ହତାଶ ।

ଗ୍ରୀକ୍ ସମ୍ରାଟ ମନ୍ତ୍ରଣା କଲେ । ନେଷ୍ଟର କହିଲେ ଆକିଲିସ୍ ଯୁଦ୍ଧରେ ଯୋଗ ନଦେଲେ ଜୟର ସମ୍ଭାବନା ନାହିଁ । ଯେ କୌଣସି ପ୍ରକାର ତାକୁ ଆଣିବାକୁ ହେବ । ବର୍ତ୍ତମାନ ଆଗମେମ୍‌ନନ୍ ତାଙ୍କର ଭୁଲ୍ ବୁଝି ପାରିଲେ । ସେ କହିଲେ—"ଆକିଲିସ ଫେରି ଆସିଲେ ବ୍ରାଇସିସକୁ ଫେରାଇ-ଦେବ ଏବଂ ଉପହାର ସାମଗ୍ରୀ ଦେବି । ଟ୍ରୟ ଦଖଲ କଲେ ଯେଉଁ ଲୁଣ୍ଠିତ ଦ୍ରବ୍ୟ ମିଳିବ ଆକିଲିସ ପାଇବେ ସବୁଠାରୁ ବେଶୀ । ତାକୁ ମୋର ଝିଅ ସହିତ ବିବାହ ଦେଇ ମୋର ରାଜ୍ୟର କେତେକ ଅଂଶ ଯୌତୁକ ଦେବି ।"

ପ୍ରସ୍ତାବ ନେଇ ଅଡ଼ିସିଉସ୍, ଆଜାକସ ଏବଂ ଫିନିକସ୍ ଆକିଲିସ୍ ପାଖକୁ ଗଲେ ।

ଆକିଲିସ ତାଙ୍କ ଶିବିର ଆଗରେ ବସି ବୀଣା ବଜାଉଥିଲେ ଏବଂ ତାଙ୍କ ଆଗରେ ବସିଥିଲେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ପେଟ୍ରୋକ୍ଲାସ । ଆକିଲିସ ଏ ତିନି ବୀରଙ୍କୁ ସମାଦରରେ ଅଭ୍ୟର୍ଥନା କରି ପାନ ଓ ଭୋଜନରେ ଆପ୍ୟାୟିତ କଲେ । ଏ ପ୍ରସ୍ତାବରେ ଆକିଲିସ କିନ୍ତୁ ରାଜି ହେଲେ ନାହିଁ । ସେ ଏଗମେମ-ନନ୍‌ଙ୍କର ପ୍ରସ୍ତାବକୁ ଘୃଣାରେ ପ୍ରତ୍ୟାଖ୍ୟାନ କଲେ ।

ବୀରମାନେ ନିରାଶାରେ ଫେରିଗଲେ ।

ଗ୍ରୀକ୍‌ମାନଙ୍କର ପୁଣି ପରାମର୍ଶ ସଭା ବସିଲା । ପ୍ରବୀଣ ନେଷ୍ଟର କହିଲେ—ଆମ ଭିତରେ ଏପରି କିଏ ବୀର ଅଛି ଯେ ଆଜି ରାତିରେ

ଛଦ୍ମବେଶରେ ଟ୍ରୋଜାନମାନଙ୍କର ଶିବିର ବୁଲି ଆସି ପାରିବ । ଟ୍ରୋଜାନମାନଙ୍କର ଯୁଦ୍ଧ ପରିକଳ୍ପନା ଲୁଚି ଲୁଚି ଜାଣି ଆସିବାକୁ ହେବ ।

ଡାୟୋମେଡ଼ିସ୍ କହିଲେ—"ମୋର ଜଣେ ବନ୍ଧୁ ହେଲେ ମୁଁ ଯାଇପାରେ ।" ଅନେକ ଆଗେଇ ଆସିଲେ କିନ୍ତୁ ଡାୟୋମେଡ଼ିସ୍ ଅଡ଼ିସିଉସ୍‌ଙ୍କୁ ସାଙ୍ଗରେ ନେଲେ ଏବଂ ରାତ୍ରି ଅନ୍ଧକାରରେ ଗୋପନରେ ବାହାରିଲେ ।

ଏଣେ ଟ୍ରୋଜାନ୍‌ମାନେ ଗ୍ରୀକ୍‌ମାନଙ୍କର ମତଲବ ଜାଣିବା ପାଇଁ ଡୋଲନ ନାମକ ଗୁପ୍ତଚରକୁ ପଠାଇଥିଲେ । ସେ ବାଟରେ ଡାୟୋମେଡ଼ିସ୍ ଏବଂ ଅଡ଼ିସିଉସଙ୍କ ହାତରେ ଧରାପଡ଼ିଲା । ଡୋଲନ ନିଜର ପ୍ରାଣରକ୍ଷାପାଇଁ ଟ୍ରୋଜାନ୍‌ମାନଙ୍କର ସମସ୍ତ ଗୋପନ କଥା କହିଦେଲା ଏବଂ ଜଣାଗଲା ଯେ ଥ୍ରେସ୍ ଦେଶର ରାଜା ରିସାସ ଟ୍ରୋଜାନ୍‌ମାନଙ୍କୁ ସାହାଯ୍ୟ କରିବା ପାଇଁ ଟ୍ରୋଜାନ ଶିବିର ପାଖରେ ତମ୍ବୁ ପକାଇ ବିଶ୍ରାମ କରୁଛନ୍ତି । ଏ ସବୁ ଶୁଣି ସାରିବା ପରେ ଡୋଲନକୁ ସେମାନେ ହତ୍ୟାକଲେ ।

ତା'ପରେ ସେମାନେ ଥ୍ରେସିଆନ ଶିବିର ପହଞ୍ଚିଲେ । ଶିବିରରେ ପଶି ଅତ୍ୟନ୍ତ ନିଷ୍ଠୁର ଭାବରେ ନିଦ୍ରିତ ଥ୍ରେସିଆନମାନଙ୍କୁ ଗୋଟିଏ ପରେ ଗୋଟିଏ ହତ୍ୟା କରିବାକୁ ଲାଗିଲେ । ନିଦ୍ରାରେ ଆକ୍ରାନ୍ତ ହେବାରେ ବାଧା ଦେବାକୁ କୌଣସି ସୁଯୋଗ ପାଇଲେ ନାହିଁ । ରକ୍ତର ଢେଉ ଖେଳିଗଲା । ରାଜା ରିସାସ ମଧ୍ୟ ମୁକ୍ତି ପାଇଲେ ନାହିଁ । ସେମାନେ ରାଜାଙ୍କୁ ହତ୍ୟାକରି ଦୁଧଭଳି ଧଳା ସଫେଦ ବିଖ୍ୟାତ ଘୋଡ଼ା ଦୁଇଟି ଖୋଲି ବିଜୟ ଗର୍ବରେ ନିଜ ଶିବିରକୁ ଫେରି ଆସିଲେ ।

ଅବଶେଷରେ ରାତ୍ରି ପ୍ରଭାତ ହେଲା ଏବଂ ପ୍ରବଳ ଯୁଦ୍ଧ ଆରମ୍ଭ ହେଲା ।

ଗ୍ରୀକ୍ ସମ୍ରାଟ ମଧ୍ଯ ଯୁଦ୍ଧ କରିବାକୁ ଲାଗିଲେ । କିନ୍ତୁ ଟ୍ରୋଜାନମାନଙ୍କୁ ସମର୍ଥନ କରି ଦେବତାମାନେ ଆସିଛନ୍ତି । ଏଗମେମନନ୍ ଆହତ ହୋଇ ଯୁଦ୍ଧସ୍ଥଳ ତ୍ୟାଗ କଲେ । ଗ୍ରୀକ୍ ଚିକିତ୍ସକ ମାକାଓନ ପେରିସଙ୍କ ତୀରରେ ଆହତ ହେବାରେ ଗ୍ରୀକ୍‌ମାନେ ବିଚଳିତ ହୋଇ ଗଲେ । ଆଜାକସ୍ ଯେତେବେଳେ ହେକ୍‌ଟରଙ୍କ ଆଗରେ ଠିଆ ହୋଇ ନପାରି ପଛକୁ ହଟିଲେ ଗ୍ରୀକ୍‌ମାନେ ମନେ ମନେ ବିପଦ ଗଣିଲେ ।

ଗ୍ରୀକ୍‌ମାନଙ୍କର ହା ହୁତାଶ ଧ୍ୱନି ଆକିଲିସ ଶୁଣିଲେ । ସେ କଥାଟି ବୁଝିବା ପାଇଁ ପେଟ୍ରୋକ୍ଲାସକୁ ପଠାଇଲେ ।

ପେଟ୍ରୋକ୍ଲସକୁ ଦେଖି ନେଷ୍ଟର ତିରସ୍କାର କରି କହିଲେ—"ତୁମେ କ'ଣ ଏଠାରେ ମଉଜ କରିବାକୁ ଆସିଛ ନା ମଜା ଦେଖିବାକୁ ଆସିଛ ? ଦେଖୁଚ ଅଗଣିତ ଗ୍ରୀକ୍ ନିଜ ଦେଶର ଗୌରବ ପାଇଁ ପ୍ରାଣ ବିସର୍ଜନ କରୁଛନ୍ତି ଏବଂ ତୁମେ ଅଭିମାନକୁ ଆଳ କରି ବସିଛ ? ଆକିଲିସ ନ ଆସିଲେ ତୁମେ ତାର ବର୍ମ ଅସ୍ତ୍ର ଶସ୍ତ୍ର ନେଇ ଆସ ଯୁଦ୍ଧ କରିବାକୁ । ଆକିଲିସର ବର୍ମ, ସାଂଜୁ ଦେଖିଲେ ଟ୍ରୋଜାନମାନେ ଭୟରେ ପଳାଇଯିବେ ।"

ପେଟ୍ରୋକ୍ଲାସ ଫେରିଗଲେ ।

ଟ୍ରୋଜାନମାନେ ଅଧିକରୁ ଅଧିକ ଭୟଙ୍କର ହୋଇପଡ଼ିଲେ । ସେମାନେ ଗ୍ରୀକ୍ ପରିଖା ପାରିହୋଇ ପ୍ରାଚୀର ଟପିଲେଣି । ଗ୍ରୀକ୍‌ମାନେ ପଥର ଉପରୁ ପକାଉଛନ୍ତି କିନ୍ତୁ ଟ୍ରୋଜାନ୍‌ମାନେ ଭ୍ରୂକ୍ଷେପ କରୁନାହାନ୍ତି ।

ପ୍ରାଚୀର ଫାଟକ ଆଗରେ ପଡ଼ିଥିବା ବିରାଟ ପଥରଟି ହେକ୍‌ଟର ଉଠାଇ ପ୍ରଚଣ୍ଡ ବେଗରେ ଫାଟକର କବାଟ ଉପରେ ଏପରି ଆଘାତ କଲେ ଯେ ଫାଟକଟି ଭାଙ୍ଗିଗଲା । ଜଳସ୍ରୋତ ପରି ହେକ୍‌ଟର ଦଳବଳ ନେଇ ଗ୍ରୀକ୍‌ସୈନ୍ୟ ବ୍ୟୂହ ଭେଦ କରି ଆଗେଇ ଚାଲିଲେ ।

ଆଜାକସ୍ ହେକ୍ଟରକୁ ଅଟକାଇ ପାରିଲେ ନାହିଁ । ଏଗମେମ୍ନନ୍ ହତାଶ ହୋଇ ଉଠିଲେ ଏବଂ ଯୁଦ୍ଧ ଛାଡ଼ି ଜାହାଜ ଚଢ଼ି ପଳାଇବାର ପ୍ରସ୍ତାବ କଲେ । ଅଡ଼ିସିଉସ୍ ଓ ଡାୟୋମେଡ଼ସ୍ ଏ ପ୍ରସ୍ତାବକୁ ବିରୋଧ କଲେ ।

ଘୋରତର ଯୁଦ୍ଧ ଲାଗିଛି । ଜଳଦେବତା ପସିଡ଼ନ୍ ଗ୍ରୀକ୍ମାନଙ୍କୁ ସାହାଯ୍ୟ କରିବାକୁ ଲାଗିଲେ । ହୀରା ଜିଉସ୍ଙ୍କୁ ଶୁଆଇ ଦେଲେ । ଶେଷରେ ଆଜାକ୍ସର ପଥରରେ ହେକ୍ଟର ଆହତ ହୋଇ ଭୂଇଁରେ ପଡ଼ିଗଲେ । ଟ୍ରୋଜାନମାନେ ହେକ୍ଟରଙ୍କୁ ଗୋଟିଏ ନିରାପଦ ସ୍ଥାନକୁ ନେଇଗଲେ ।

ଦଳପତି ହେକ୍ଟର ପଡ଼ିବାରେ ଟ୍ରୋଜାନମାନେ ନିରୁତ୍ସାହିତ ହେଲେ । ଗ୍ରୀକ୍ମାନେ ପୁଣି ଉଲ୍ଲସିତ ହୋଇପଡ଼ିଲେ ଏବଂ ଟ୍ରୋଜାନ୍ମାନଙ୍କୁ ପଛକୁ ତଡ଼ିନେଲେ ।

ଏହାଭିତରେ ଦେବରାଜ ଜିଉସ୍‌ର ନିଦଭାଙ୍ଗି ଗଲା । ସେ ପସିଡ଼ନ୍‌ଙ୍କୁ ଖୁବ୍ ତିରସ୍କାର କଲେ । ଜଳଦେବତା ପସିଡ଼ନ୍ ତାଙ୍କର ସାନଭାଇ । ପସିଡ଼ନ୍‌ଙ୍କୁ ରଣକ୍ଷେତ୍ର ତ୍ୟାଗ କରିବାକୁ ପଡ଼ିଲା । ଜିଉସ୍‌ଙ୍କ ଆଦେଶରେ ଏପଲୋ ହେକ୍ଟରଙ୍କୁ ସୁସ୍ଥ କରିଦେଲେ । ଦଶଗୁଣ ଶକ୍ତି ନେଇ ହେକ୍ଟର ଗ୍ରୀକ୍ମାନଙ୍କ ଉପରେ ପୁଣି ଆକ୍ରମଣ କଲେ । ଗ୍ରୀକ୍ମାନେ ଛତ୍ରଭଙ୍ଗ ଦେଲେ । ଅଗଣିତ ଗ୍ରୀକ୍‌ବୀର ମରି ଶୋଇଲେ ।

ଆକିଲିସ ତାଙ୍କ ଶିବିରରେ ବସି ଯୁଦ୍ଧର କୋଳାହଳ ଶୁଣୁଥିଲାବେଳେ ପେଟ୍ରୋକ୍ଲାସ ପହଞ୍ଚି ଉତ୍ତେଜିତ ଭାବରେ କହିଲେ—"ଆକିଲିସ, ତମେ ଯଦି ନିଜେ ଯୁଦ୍ଧରେ ଯୋଗ ଦେବନାହିଁ, ତେବେ ତମର ବର୍ମ—ଢାଲ୍—ଅସ୍ତ୍ର ମୋତେ ଦିଅ । ଗ୍ରୀକ୍‌ମାନଙ୍କର ଏ ବିପଦ ଆଖିରେ ମୁଁ ଦେଖି ପାରୁନାହିଁ ।"

ଟ୍ରୋଜାନମାନଙ୍କର ଜୟଧ୍ୱନି ଶୁଣାଗଲା । ଆଜାକ୍ସ ହେକ୍ଟରଙ୍କୁ ପାରୁନାହିଁ । ଦଳେଦଳେ ଟ୍ରୋଜାନ୍ ସୈନ୍ୟ ଗ୍ରୀକ୍‌ବ୍ୟୂହ ଭେଦ କରି ଜାହାଜ

ଉଠିଯାଇଛନ୍ତି ହାତରେ ମଶାଲ୍ ଧରି । ଜାହାଜର ନିଆଁ ଲଗାଇ ପୋଡ଼ି ଛାରଖାର କରିଦେବେ । ଆକିଲିସ ଏ ଦୃଶ୍ୟ ସହ୍ୟ କରି ପାରୁନଥିଲେ । ଶେଷରେ ପେଟ୍ରୋକ୍ଲାସଙ୍କୁ ତାଙ୍କର ବର୍ମ, ସାଂଜୁ ଓ ଅସ୍ତ୍ରଶସ୍ତ୍ର ଦେଲେ ଏବଂ ତା ସଙ୍ଗରେ ଦେଲେ ଦେବ-ଅଶ୍ୱଯୁକ୍ତ ରଥ । ପେଟ୍ରୋକ୍ଲାସ୍ ଆକିଲିସଙ୍କର ବଳୁଆ ମାର୍ମିଡ଼ନ ସୈନ୍ୟଦଳଙ୍କୁ ସାଙ୍ଗରେ ନେଇ କ୍ଷଣକମାତ୍ର ଡେରି ନ କରି ଟ୍ରୋଜାନ ଉପରେ ଆକ୍ରମଣ କଲେ ।

ପେଟ୍ରୋକ୍ଲାସ ଦେହରେ ଆକିଲିସ୍‌ର ବର୍ମ ଏବଂ ରଥରେ ଆକିଲିସ୍‌ର ସୁବିଖ୍ୟାତ ଘୋଡ଼ା ଦେଖି ଟ୍ରୋଜାନ୍‌ମାନେ ମନେ କଲେ ଯେ ବୋଧହୁଏ ଆକିଲିସ୍ ଏଥର ଯୁଦ୍ଧରେ ଯୋଗଦେଲେ । ସେମାନେ ଭୟ କଲେ । ପେଟ୍ରୋକ୍ଲାସ ପ୍ରଚଣ୍ଡ ବେଗରେ ଆକ୍ରମଣ କଲେ । ଗ୍ରୀକ୍‌ମାନେ ଟ୍ରୋଜାନ୍‌ମାନଙ୍କୁ ଗୋଡ଼ାଇବାର ଦେଖାଗଲା ପେଟ୍ରୋକ୍ଲାସ ସିଂହ ପରାକ୍ରମରେ ଗୋଟିଏ ପରେ ଗୋଟିଏ ଟ୍ରୋଜାନଙ୍କୁ ହତ୍ୟା କରି ପ୍ରବଳବେଗରେ ଆଗେଇ ଚାଲିଲେ । ଟ୍ରୋଜାନମାନେ ତାଙ୍କ ଆଗକୁ ଆସିବାକୁ ଭୟଭୀତ ହେଲେ ।

ଟ୍ରୋଜାନବୀର ସର୍ପିଡ଼ନ୍ ପେଟ୍ରୋକ୍ଲାସର ସମ୍ମୁଖିନ ହେଲେ । ଦୁହେଁ ରଥରୁ ଓହ୍ଲାଇ ଲଢ଼ିବାକୁ ଲାଗିଲେ । ପେଟ୍ରୋକ୍ଲାସ ବର୍ଚ୍ଛା ଛାଡ଼ିଲେ । କିନ୍ତୁ ଆଘାତ କଲାନାହିଁ । ସର୍ପିଡ଼େନ ଆଘାତରେ ପେଟ୍ରୋକ୍ଲାସଙ୍କର ଗୋଟିଏ ଘୋଡ଼ା ମରି ଶୋଇଲା । ସେ ପୁଣି ବର୍ଚ୍ଛା ମାରିଲେ କିନ୍ତୁ ସଫଳ ହେଲାନାହିଁ । ପେଟ୍ରୋକ୍ଲାସଙ୍କର ବର୍ଚ୍ଛାରେ ସର୍ପିଡ଼େନଙ୍କର ପ୍ରାଣହୀନ ଦେହ ମାଟିରେ ଲୋଟି ପଡ଼ିଲା ।

ସର୍ପିଡ଼େନ୍ ଶବ ନେଇ ଦୁଇପକ୍ଷରେ ଲଢ଼େଇ ଚାଲିଲା । ହେକ୍ଟର ଓ ଇନିୟସ୍ ଯୋଦ୍ଧାମାନେ ସର୍ପିଡ଼େନଙ୍କ ମୃତଦେହକୁ ରକ୍ଷା କରି ଯୁଦ୍ଧକଲେ । ଗ୍ରୀକ ମାନେ ମୃତଦେହକୁ ନେବାକୁ ଯୁଦ୍ଧ ଚଳାଇଲେ । ଶେଷରେ ଏପଲୋ ଆସି ଅଲକ୍ଷ୍ୟରେ ମୃତଦେହକୁ ନେଇଗଲେ ।

ଟ୍ରୋଜାନମାନେ ପଛେଇ ପଛେଇ ଚାଲିଛନ୍ତି । ପେଟ୍ରୋକ୍ଲାସ ଟ୍ରୟର ପ୍ରାଚୀର ଧାର ପର୍ଯ୍ୟନ୍ତ ଆଗେଇଆସିଲେ । ଏଇ ସମୟରେ ହେକ୍‌ଟର ଆସି ବାଧାଦେଲା ।

ପେଟ୍ରୋକ୍ଲାସ ପଥର ମାଡ଼ରେ ହେକ୍‌ଟରଙ୍କର ସାରଥି ମରିଗଲା । ଏଥର ହେକ୍‌ଟର ଓ ପେଟ୍ରୋକ୍ଲାସଙ୍କର ଚାଲିଲା ପ୍ରବଳ ଯୁଦ୍ଧ ।

ଏପୋଲୋ ଆସି ଟ୍ରୋଜାନ ଦଳରେ ଯୋଗଦେଲେ । ସେ ଗଭୀର କୁହୁଡ଼ି ସୃଷ୍ଟି କରି ଥରକୁଥର ପେଟ୍ରୋକ୍ଲାସକୁ ଧ୍ୟାନଧାନ କରି ଦେବାକୁ ଲାଗିଲେ । କିନ୍ତୁ ରଣରେ ଉନ୍ମତ୍ତ ହୋଇ ପେଟ୍ରୋକ୍ଲାସ ଭ୍ରୁକ୍ଷେପ କଲେ ନାହିଁ । ଏପୋଲୋ ଆସି ପେଟ୍ରୋକ୍ଲାସର ବର୍ମ ଓ ସାଞ୍ଜୁ, ହେଲେମେଟ ଖୋଲି ଦେଲେ । ସେ କିଛି ବୁଝିବା ପୂର୍ବରୁ ଜଣେ ଟ୍ରୋଜାନ ଆଘାତରେ ମାଟିତଳେ ପଡ଼ିଯିବା ସଙ୍ଗେ ସଙ୍ଗେ ହେକ୍‌ଟରଙ୍କ ବର୍ଚ୍ଛା ତାଙ୍କର ବକ୍ଷବିଦ୍ଧ କଲା । ଦେଖୁ ଦେଖୁ ବୀର ପେଟ୍ରୋକ୍ଲାସର ଜୀବନ ଦୀପ ଲିଭିଗଲା ।

## ଦଶ

ପେଟ୍ରୋକ୍ଲାସଙ୍କ ପତନ ପରେ ପୁଣି ଯୁଦ୍ଧ ଲାଗିଲା ତାଙ୍କ ମୃତ ଦେହ ନେବାରେ । ମେନେଲାସ, ଆଜାକ୍ସ ପ୍ରଭୃତି ଗ୍ରୀକ୍ ବୀରମାନେ ସେ ଦେହରକ୍ଷା କରିବା ପାଇଁ ଯୁଦ୍ଧ କଲେ । କିନ୍ତୁ ଅକେଲସ୍ ହେକ୍‌ଟର ହାତରୁ ରକ୍ଷା ପାଇବା କଷ୍ଟକର ହେଲା । ଦେଖୁ ଦେଖୁ ହେକ୍‌ଟର ପେଟ୍ରୋକ୍ଲାସର ଦେହରୁ ଆକାଲିସ୍‌ର ବର୍ମ ସାଞ୍ଜୁ ଅସ୍ତ୍ରଶସ୍ତ୍ର ଖୋଲି ତା ଦେହକୁ ନେଇଗଲେ ।

ପେଟ୍ରୋକ୍ଲାସର ଡେରି ହେବାର ଦେଖି ଆକିଲିସ୍ ଅଧୀର ହୋଇ ଉଠିଲବେଳେ ନେଷ୍ଟରଙ୍କ ପୁଅ ଏଣ୍ଟିଲୋକାସ ଆସି ପେଟ୍ରୋକ୍ଲାସଙ୍କର ମୃତ୍ୟୁସମ୍ବାଦ ଜଣାଇଲ ।

ବୀର ଆକିଲସ ଅଧୀରହୋଇ ବ୍ୟାକୁଳ ଭାବରେ କାନ୍ଦି କାନ୍ଦି ମାଟିରେ ଗଡ଼ିଗଲେ । ଏ କଥା ଦେଖି ତାଙ୍କ ମା ଦେବୀ ଥେଟିସ ଆଉ ସ୍ଥିର ହୋଇ ରହି ନପାରି ଆସି ଶୋକାର୍ତ୍ତ ପୁତ୍ରକୁ ସାନ୍ତ୍ୱନା ଦେବାକୁ ଲାଗିଲେ । କିନ୍ତୁ ଆକିଲସ ଆଉ ବ୍ୟସ୍ତ ହେବାର ଅବସ୍ଥାରେ ନ ଥିଲେ । ସେ ବନ୍ଧୁ ମୃତ୍ୟୁର ପ୍ରତିଶୋଧ ନେବାକୁ ଦୃଢ଼ ପ୍ରତିଜ୍ଞ ହୋଇ ଯୁଦ୍ଧକ୍ଷେତ୍ରକୁ ଚାଲିଲେ । ଦେବୀ ଥେଟିସ୍ କହିଲେ—"ପୁଅ ଆଜି ରାତିଟା ଅପେକ୍ଷା କର । ତୋର ସାଞ୍ଜୁ ବର୍ମକୁ ତ ହେକ୍ଟର ନେଇ ଯାଇଛି । ଆଜି ରାତି ଭିତରେ ତୋ ପାଇଁ ନୂଆ ବର୍ମ ଓ ଅସ୍ତ୍ରଶସ୍ତ୍ର ତିଆରି କରିଦେଉଛି । କାଲି ସକାଳେ ଯୁଦ୍ଧକୁ ଯିବୁ ।"

ହୀରା ଆକିଲସକୁ କହିଲେ, "ଗ୍ରୀକ୍‌ମାନେ ଟ୍ରୋଜାନମାନଙ୍କ ହାତରୁ କୌଣସି ପ୍ରକାରେ ପେଟ୍ରୋକ୍ଲାସଙ୍କ ଶବଟିକୁ ଅଟକାଇ ପାରୁନାହାନ୍ତି । ଆକିଲସ ଯୁଦ୍ଧ ନ କରନ୍ତୁ; ଅନ୍ତତଃ ଯଦି ଥରେ ଦେଖା ଦିଅନ୍ତି ତେବେ ହୁଏତ ଯୁଦ୍ଧର ଗତି ପରିବର୍ତ୍ତନ ଘଟିପାରେ ।

ଏକଥା ଶୁଣି ଆକିଲସ୍ ପ୍ରାଚୀର ଉପରେ ଠିଆ ହୋଇ ଗ୍ରୀକ୍‌ମାନଙ୍କୁ ଉତ୍ସାହ ଦେବାକୁ ଲାଗିଲେ । ଆକିଲସଙ୍କୁ ଦେଖି ଗ୍ରୀକ୍‌ମାନଙ୍କ ମନରେ ନୂତନ ଉଦ୍ଦୀପନା ଦେଖାଦେଲା ଏବଂ ପ୍ରବଳ ଆକ୍ରମଣ କରି ଟ୍ରୋଜାନମାନଙ୍କ ହାତରୁ ପେଟ୍ରୋକ୍ଲାସର ଶବଟି କାଢ଼ିଆଣିଲେ ।

ସେ ରାତିରେ ଦେବତାମାନଙ୍କର କାରିଗର ବିଶ୍ୱକର୍ମା ହେଫିଷ୍ଟାସ ଦେବଙ୍କ ଆଖିରେ ନିଦ ନାହିଁ । ଦେବୀ ଥେଟିସ ଆକିଲସର ବର୍ମ, ସାଞ୍ଜୁ ଓ ଅସ୍ତ୍ରଶସ୍ତ୍ର ତିଆରି କରିବାପାଇଁ ଏହାଙ୍କ ଉପରେ ଭାର ଦେଇଥିଲେ ।

ସକାଳେ ସବୁ ପ୍ରସ୍ତୁତ ହୋଇଗଲା । ଆକିଲିସ ଦେବ ନିର୍ମିତ ବର୍ମ, ସାଞ୍ଜୁ, ସ୍ୱର୍ଣ୍ଣଖଚିତ ଶିରସ୍ତ୍ରାଣ ଏବଂ ଅଭେଦ୍ୟ ଢାଲରେ ସଜ୍ଜିତ ହୋଇ ଗ୍ରୀକ୍ ଶିବିର ନିକଟରେ ହୁଙ୍କାର କଲେ । ଆକିଲିସଙ୍କର ଆହ୍ୱାନରେ ସମସ୍ତେ ଜାଗି ଉଠିଲେ । ଆହତ ଏଗମେମ୍‌ନନ୍ ଦୌଡ଼ିଆସି ଲଜରେ ନିଜର ଦୋଷ ସ୍ୱୀକାର କଲେ । ଆକିଲିସ କହିଲେ "ଆଜି ପଛ କଥା ସବୁ ଭୁଲିଯାଆନ୍ତୁ । ବର୍ତ୍ତମାନ ଯୁଦ୍ଧ କଥାଛଡ଼ା ଅନ୍ୟଚିନ୍ତା ନାହିଁ । ମୁଁ ବର୍ତ୍ତମାନ ଟ୍ରୋଜାନ୍‌ମାନଙ୍କ ଉପରେ ଆକ୍ରମଣ କରିବାକୁ ଚାହେଁ ।" ତା'ପରେ ଆରମ୍ଭ ହେଲା ଭୟଙ୍କର ଯୁଦ୍ଧ । ବଣନିଆଁ ପରି ଆକିଲିସ୍ ଟ୍ରୋଜାନ ବାହିନୀ ଧ୍ୱଂସ କରୁ କରୁ ଟ୍ରୟ୍ ଆଡ଼କୁ ଆଗେଇଗଲେ ।

ଟ୍ରୋଜାନମାଙ୍କ ପକ୍ଷରୁ ପ୍ରଥମେ ଇନିସ୍‌ୟାସ ବାଧାଦେଲେ । ଇନିସ୍‌ୟାସ ବର୍ଚ୍ଛା ମାରିଲେ କିନ୍ତୁ ଆକିଲିସର ଦୁର୍ଭେଦ୍ୟ ଢାଲକୁ ବିଦ୍ଧକଲା ନାହିଁ । ଆକିଲିସଙ୍କର ବର୍ଚ୍ଛା ମୁକ୍ତହେଲା । ଇନିସ୍‌ୟାସ ଗୋଟିଏ ପଥର ଉଠାଇଲା-ବେଳକୁ ଆକିଲିସ ତରବାରୀ ନେଇ ତାଙ୍କୁ ଆକ୍ରମଣ କଲେ । ଠିକ୍ ସେତିକବେଳେ ପସିଡ଼େନ୍ ଦେବ ଆସି ମାୟାଜାଲରେ ଇନିସ୍‌ୟାସକୁ ସେଠାରୁ ଉଦ୍ଧାର କଲେ, ନହେଲେ ତାଙ୍କର ମୁକ୍ତି ନ ଥିଲା ।

ଇନିସ୍‌ୟାସକୁ ନଦେଖି ଆକିଲିସ ରାଗରେ ଜଳିଗଲେ । ତେଣୁ ଯେ ସମ୍ମୁଖରେ ଯାହାକୁ ପାଇଲେ ମାରିବାକୁ ଲାଗିଲେ । ସ୍କାମାଣ୍ଡର ନଦୀ ମୃତ ଟ୍ରୋଜନଙ୍କ ରକ୍ତରେ ଲାଲ ହୋଇଗଲା । ନଦୀରେ ଶବ ଜମା ହୋଇ ଗତିରୁଦ୍ଧ ହେବାରେ ନଦୀଟି ରାଗିଯାଇ ବନ୍ୟା ସୃଷ୍ଟି କରି ଚତୁର୍ଦ୍ଦିଗ ଭସାଇ ନେଲା । ଆକିଲିସ ଗୋଟିଏ ଏଲମ ଗଛ ନେଇ ବାଧା ଦେବାକୁ ବସିଲେ ତାହା ନଦୀଟି ଭସାଇନେଲା । ଆକିଲିସ ପ୍ରାଣ ଭୟରେ ଦୌଡ଼ିବାକୁ ଲାଗିଲେ । ନଦୀ ମଧ୍ୟ ତାଙ୍କୁ ଧରିବାକୁ ଛୁଟିଲା । ଅବଶେଷରେ ଏଥିନୀ ଦେବୀ ଆକିଲିସଙ୍କୁ ରକ୍ଷାକଲେ । ହେଫିସ୍ଥାସ ଦେବତା ଆସି ନିଆଁ ସୃଷ୍ଟିକରି ପାଣି ଶୁଖାଇ ତାଙ୍କୁ ରକ୍ଷାକଲେ ।

ଆକିଲିସ ପୁଣିପ୍ରବଳ ବିକ୍ରମରେ ଯୁଦ୍ଧକଲେ । ଟ୍ରୋଜାନ ସୈନ୍ୟମାନେ ଭୟରେ ଛତ୍ରଭଙ୍ଗ ଦେଲେ । ଆକିଲିସ୍ ସେମାନଙ୍କୁ ତଡ଼ି ନାଗରୀର ପ୍ରାଚୀର ପାଖକୁ ନେଇଗଲେ ।

ସମସ୍ତେ ପଳାଗଲେ କିନ୍ତୁ ରହିଲେ ବୀର ହେକ୍‌ଟର ! ଟ୍ରୋଜାନ-ମାନଙ୍କ ଭିତରେ ପଲିଡ଼େମାସ ଜଣେ ପ୍ରବୀଣ ଓ ବିଜ୍ଞ ବ୍ୟକ୍ତି । ଆକିଲିସର ଏ ଭୟଙ୍କର ମୂର୍ତ୍ତି ଦେଖି ସେ ହେକ୍‌ଟରକୁ ନଗରୀ ଭିତରକୁ ଆସିବାକୁ ପରାମର୍ଶ ଦେଲେ । ବୃଦ୍ଧ ପିତା ପ୍ରାୟାମ ଏବଂ ରାଣୀ ହେକଭବା ତାଙ୍କୁ ନଯିବାକୁ ଅନୁରୋଧ କଲେ । ହେକ୍‌ଟର କିନ୍ତୁ ସେ କଥା ଶୁଣିଲେ ନାହିଁ ।

ଆଜି ଆକିଲିସ ସହିତ ଗୋଟାଏ ଶେଷ ବୁଝାମଣା ହେବ । ସେ ମରିବେ ନଚେତ ଆକିଲିସକୁ ମରିବାକୁ ପଡ଼ିବ ।

ଗୋଟିଏ ହାତରେ ଦୀର୍ଘ ବର୍ଚ୍ଛା ନେଇ ହେକ୍‌ଟର ପ୍ରାଚୀର ଦେହରେ ଆଉଜି ଆସି ନିର୍ଭୟରେ ଠିଆ ହୋଇରହିଲେ । ଦେଖୁ ଦେଖୁ ଆକିଲିସ ଆସି ଆଗରେ ଠିଆ ହେଲେ ।

ଦୁଇ ବୀର କ୍ଷଣିକ ପାଇଁ ସାମ୍ନା ସାମ୍ନି ଠିଆହେଲେ । ହେକ୍‌ଟର ଆଉ ଡେରି କଲେନାହିଁ । ଭୀମ ବେଗରେ ସେ ବର୍ଚ୍ଛା ତୋଳି ଆକିଲିସକୁ ଆକ୍ରମଣ କଲେ । କିନ୍ତୁ ଦେବନିର୍ମିତ ଆକିଲିସଙ୍କର ଢାଲକୁ ହେକ୍‌ଟରଙ୍କର ବର୍ଚ୍ଛା ଭେଦକରି ନପାରି ମାଟିରେ ଛିଡ଼ିକ ପଡ଼ିଲା । ସେ ତରବାରୀ ନେଇ ଆକିଲିସକୁ ଆକ୍ରମଣ କଲେ । ଦୁର୍ଭେଦ୍ୟ ଢାଲର ଆଢ଼ୁଆଳରେ ଆକିଲିସ କାଠର ବିରାଟ ବର୍ଚ୍ଛା ଧରି ଆଗେଇ ଆସିଲେ । ହେକ୍‌ଟରକୁ ସେ ବର୍ଚ୍ଛା ମାରିଲେ । ବର୍ଚ୍ଛା ହେକ୍‌ଟରର ବର୍ମ ସାଂଜୁକୁ ଭେଦକରି ତାଙ୍କର କଣ୍ଠନଳୀ ବିଧିକଲା । ଯନ୍ତ୍ରଣାରେ ଛଟପଟ ହୋଇ ମହାବୀର ହେକ୍‌ଟର ମାଟି ଉପରେ ଲୋଟି ପଡ଼ିଲେ ।

ସେଦିନର ଯୁଦ୍ଧ ସେଠାରେ ଶେଷହେଲା । ଆକିଲିସଙ୍କୁ ଅଟକାଇବ କିଏ ? ଆକିଲିସ ମୃତଦେହର ପାଦରେ ତାଙ୍କର ବର୍ଚ୍ଛା ବାନ୍ଧିକରି ପ୍ରବଳବେଗରେ ରଥ ଛୁଟାଇଲେ । ହେକ୍‌ଟରଙ୍କର ମଲାଦେହ

ଧୂଳିରେ ଲେଟି ରଥ ସାଙ୍ଗରେ ଘୋଷାରି ହୋଇଯିବାକୁ ଲାଗିଲା । ଟ୍ରୟରେ ହା ହା କାର ପଡିଗଲା । ବାରଦିନ ଧରି ହେକ୍‌ଟରର ମୃତଦେହର ସଂସ୍କାର ହୋଇ ପାରିଲା ନାହିଁ । ପ୍ରତିଦିନ ଆକିଲିସ ସେ ମୃତଦେହକୁ ରଥ ପଛରେ ବାନ୍ଧି ପେଟ୍ରୋକ୍ଲାସର ସମାଧି ଚାରିପଟେ ବୁଲିବାକୁ ଲାଗିଲେ । ଏବଂ ତା'ପରେ ଗୋଟିଏ ଖୋଲା ଜାଗାରେ ଅରକ୍ଷିତ ଅବସ୍ଥାରେ ପକାଇ ଦେଲେ ।

ଶେଷରେ ରାଜା ପ୍ରାୟାମ ପ୍ରଚୁର ଉପହାର ନେଇ ଅକିଲିସ ଶିବିରକୁ ଯାଇ ପ୍ରିୟ ପୁତ୍ରର ମୃତଦେହକୁ ଫେରାଇ ଦେବାକୁ ପ୍ରାର୍ଥନା କଲେ । ଆକିଲିସ ବୃଦ୍ଧପିତାଙ୍କର କରୁଣ ନିବେଦନରେ ହେକ୍‌ଟରର ଦେହଟି ଫେରାଇଦେଲେ ।

ଟ୍ରୋଜାନମାନେ ଗୋଟିଏ ବିରାଟ ଚିତା କରି ସେମାନଙ୍କର ପ୍ରିୟ ବୀରକୁ ପରମ ଯତ୍ନରେ ଶୁଆଇ ନିଆଁ ଲଗାଇ ଦେଲେ । ଟ୍ରୋଜନମାନେ ଚିତାଭସ୍ମ ଉପରେ ନିର୍ମାଣ କଲେ ଏକ ବିରାଟ ସ୍ତୁପ ।

ହେକ୍‌ଟରଙ୍କ ମୃତ୍ୟୁରେ ଟ୍ରୟ ଯୁଦ୍ଧ ଶେଷ ହେଲା ନାହିଁ । ଆକିଲିସ ଯେଉଁଠାରେ ହେକ୍‌ଟରଙ୍କୁ ବଧ କରିଥିଲେ ଠିକ୍ ସେହି ସ୍ଥାନରେ ଦିନେ ପେରିସର ତୀରରେ ବିଦ୍ଧହୋଇ ସେ ପ୍ରାଣ ହରାଇଲେ । ଆକିଲିସ ଜନ୍ମ ପରେ ତାଙ୍କ ମା ତାଙ୍କୁ ଷ୍ଟିକ୍ସ ନଦୀରେ ବୁଡ଼ାଇ ଦେଇଥିଲେ । ଏ ନଦୀରେ ଶରୀର ବୁଡ଼ାଇଲେ ଦେହ ବଜ୍ରଭଳି କଠିନ ହୁଏ ଏବଂ କୌଣସି ଅସ୍ତ୍ର ଭେଦ କରି ପାରେ ନା । କିନ୍ତୁ ଥେଟିସ ଆକିଲିସଙ୍କୁ ବୁଡ଼ାଇଲା ବେଳେ ତାହାଣ ପାଦର ଗୋଇଁଠିଟା ବୁଡ଼ିନଥିଲା । ସେହିଠାରେ ତୀର ଆସି ବିଦ୍ଧକରି ମୃତ୍ୟୁ ଘଟାଇଥିଲା ।

ହଠାତ୍ ଦିନେ ଦେଖାଗଲା ଯେ ଗ୍ରୀକ୍‌ମାନେ ଶିବିର ଉଠାଇ ଜାହାଜ ଚଢି ସମୁଦ୍ର ଯାତ୍ରା କରୁଛନ୍ତି । ଟ୍ରୟମାନଙ୍କର ଶତ୍ରୁ ବୋଲି କେହି ରହିଲେ ନାହିଁ । ସେମାନେ ଗୋଟିଏ ବଡ଼ କାଠର ଘୋଡ଼ା ପଡ଼ିଥିବାର ଦେଖିଲେ । ଅବରୋଧ ମୁକ୍ତ ଟ୍ରୟବାସୀ ତାହାକୁ ବିଜୟ ଚିହ୍ନସ୍ୱରୂପ ନଗରକୁ ଆଣି ଉତ୍ସବ ଆରମ୍ଭ କରିଦେଲେ ।

ପ୍ରକୃତରେ ଏହି କାଠ ଘୋଡ଼ା ଭିତରେ ଲୁଚି ରହିଥିଲେ ସାହସୀ ଗ୍ରୀକ୍ ଯୋଦ୍ଧାମାନେ । ଟ୍ରୋଜାନମାନେ ଭୋଜିଭାତ ଉତ୍ସବ ଶେଷକରି ଶୋଇଲେ ।

ଏତିକବେଳେ ଗ୍ରୀକ୍ ବୀରମାନେ କାଠଘୋଡ଼ାରୁ ବାହାରି ଟ୍ରୟ ନଗରର ପ୍ରଧାନ ଫାଟକ ଖୋଲିଦେଲେ ।

ପ୍ରକୃତରେ ଗ୍ରୀକ୍ ଜାହାଜଗୁଡ଼ିକ ଟ୍ରୋଜାନମାନଙ୍କୁ ବିଭ୍ରାନ୍ତ କରିବା ପାଇଁ ଟିକିଏ ଆଗେଇଆସି ଗୋଟିଏ ଦ୍ୱୀପରେ ଅପେକ୍ଷା କରିଥିଲେ । ରାତ୍ରିର ଅନ୍ଧକାର ଭିତରେ ସେଗୁଡ଼ିକ ଫେରି ଆସିଲା । ଦଳ ଦଳ ହୋଇ ଗ୍ରୀକ୍ ସୈନ୍ୟମାନେ ଫାଟକ ପାରହୋଇ ଅରକ୍ଷିତ ନଗର ଭିତରକୁ ପଶିଗଲେ ।

ଏହାପରେ ଭୟାବହ କାଣ୍ଡ ଘଟିଲା । ଗ୍ରୀକ୍ ସୈନ୍ୟମାନେ ନଗର ଭିତରେ ପଶିଗଲେ । ହାତରେ ଜ୍ୱଳନ୍ତ ମଶାଲ । ସେମାନେ ଘରେ ଘରେ ଭିତରକୁ ପଶି ନିଆଁ ଲଗାଇଦେଲେ । ଚାଲିଲା ନିର୍ମମ ହତ୍ୟାକାଣ୍ଡ ।

ଘୁମନ୍ତ ଟ୍ରୟ ବାସୀ କିଛି ବୁଝିବା ପୂର୍ବରୁ ଗ୍ରୀକ୍‌ମାନଙ୍କର ଶାଣିତ ଅସ୍ତ୍ରାଘାତରେ ତଳେ ଲୋଟି ପଡ଼ିଲେ । ଦେଖୁ ଦେଖୁ ରକ୍ତ ନଦୀ ବୋହିଗଲା । ଘରଦ୍ୱାର ପୋଡ଼ି ପାଉଁଶ ହୋଇଗଲା ।

ହାସ୍ୟମୟୀ ଟ୍ରୟ ଶ୍ମଶାନରେ ପରିଣତହେଲା, ଟ୍ରୟର ପତନ ହେଲା ।

ମେନେଲସ୍ ହେଲେନ୍‌କୁ ନେଇ ଦେଶକୁ ଫେରିଲେ ।

ଯାହାପାଇଁ ଟ୍ରୟ ଧ୍ୱଂସ ହେଲା ସେ ପୁଣି ମେନେଲସଙ୍କ ରାଣୀ ହୋଇ ସୁଖ ଶାନ୍ତିରେ ଘର କରି ଆନନ୍ଦରେ ରହିଲେ ।

